# ଉତ୍ତର ଭାରତ ଭ୍ରମଣ

--) ପ୍ରଥମ ଭାଗ--ଦିଲ୍ଲୀ (--




ପ୍ରଣେତା—

ଶ୍ରୀ ଶ୍ରୀ ବ୍ରଜକିଶୋରଚନ୍ଦ୍ର, ସିଂହଦେବ

ଯୁବରାଜ—ଧରାକୋଟ


# Northern India Tour

## Part I—Delhi


By

*Sri Sri Brajakishore Chandro Sinha Deb*

Jubraj—DHARAKOTE



( ପ୍ରଥମ ସସ୍କରଣ )

**1936**

# ସୂଚୀ

## ବିଷୟ

## ପ୍ରତିକୃତି





# ଉତ୍ତର ଭାରତ ଭ୍ରମଣ

## ପ୍ରଥମ ଭାଗ--ଦିଲ୍ଲୀ



ଏହି ମରଜଗତରେ ମନୁଷ୍ୟ ଯେତେ କ୍ରିୟା କଳାପ କରେ, ସେସବୁ
ତାହାର ସହିତ ଲୀନ ହୋଇଯାଏ । ଈଶ୍ୱର ମନୁଷ୍ୟଙ୍କୁ ବିବେକ ଓ
ମନ ଭଳିଆ ଉପାଦେୟ ଦ୍ରବ୍ୟ ଦେଇଥିଲେ ସୁଦ୍ଧା ମନରେ ଗୋଟିଏ
ଗୁରୁତର ଦୋଷ ରଖି ଦେଇଅଛନ୍ତି । ତାହାର ନାମ ବିସ୍ମରଣତା ।
ଏହା ମନୁଷ୍ୟ ସ୍ୱଦେହରେ ଅନୁଭବ କରେ ଓ ଦେହାନ୍ତରରେ ମଧ୍ୟ
ଅନୁଭବ କରେ । ଏହି ଦୋଷଟି ମନୁଷ୍ୟଠାରେ ନଥିଲେ ସେ ପର-
ଜନ୍ମମାନଙ୍କରେ ଜାତସ୍ମର ହୋଇପାରନ୍ତା ଓ ଇହଜନ୍ମରେ ନିଜ
ବୁଦ୍ଧି ବଳରେ ଈଶ୍ୱର ସୃଷ୍ଟିକୁ ମଧ୍ୟ ବଳି ଯାଇପାରନ୍ତା । ଆମ୍ଭେମାନେ
ଆଜି ଯାହାଦେଖୁଁ, କାଲି ତାହା ବିସ୍ମରଣ ହୋଇଯାଏ । କାଲି
ନହେଲେ ଦୁଇ ଚାରି ଦିନଠାରେ ବା ଏକବର୍ଷଠାରେ ତାହା ମନରୁ
ବିସ୍ମୃତ ହୋଇ ଅନ୍ତର୍ଦ୍ଧାନ ହୋଇଯାଏ । ମନୁଷ୍ୟର ଜୀବନର ଘଟଣା

ଗୁଡ଼ିକ ଚିରଦିନ ପାଇଁ ଚିର ସ୍ମରଣୀୟ କରି ରଖିବାକୁ ହେଲେ ତାହାସବୁ ଭାଷା ସାହାଯ୍ୟରେ ଲିପିବଦ୍ଧ କରି ଯଦି ରଖାଯାଏ, ତେବେ ସେସବୁ ଚିରଦିନ ନିମିତ୍ତ ଅମୂଲ୍ୟରତ୍ନ ସ୍ୱରୂପ ମନୁଷ୍ୟ ନିଃଶେଷ ହେଲାପରେ ରହେ । ଜଗତରେ ଯେତେ ଇତିହାସ ଲେଖାଯାଇଅଛି, ଏହିନୀତିମ ଅବଲମ୍ବନ କରି । ଦେଶମାନଙ୍କର ବିଶିଷ୍ଟ ଘଟଣା ଓ ବିଶିଷ୍ଟ ବ୍ୟକ୍ତିମାନଙ୍କର ବିଷୟରେ ସ୍ମରଣୀୟ ବୃତ୍ତାନ୍ତ ସବୁ ପୁଞ୍ଜିଭୂତ ହୋଇ ଭାଷାସାହାଯ୍ୟରେ ଗ୍ରନ୍ଥାକାରରେ ଲିଖିତ ହୁଏ ।

ମୋହର ଏହି ଲେଖାର ପ୍ରୟାସ ଗୋଟିଏ ଉତ୍ତର ଭାରତର ଇତିହାସ ଲେଖିବା ନୁହେ ବା ଭ୍ରମଣ ବୃତ୍ତାନ୍ତକୁ Guide ଆକାରରେ ଲେଖି ଅର୍ଥଉପାର୍ଜନ କରିବା ନୁହେ, କେତେକ କାର୍ଯ୍ୟବଶତଃ ମୋହର ପିତୃଦେବଙ୍କ ସହ ଉତ୍ତର ଭାରତକୁ ଯିବା ସୁବିଧା ମିଳିବାରୁ ଯାହା ୬ ମୋର ନୟନଗୋଚର ହେଲା, ଭ୍ରମଣର ଗୋଟିଏ ସ୍ମାରକ ସଦୃଶ୍ୟ ତାହା ଲିପିବଦ୍ଧ କରି ରଖିବା ଇଚ୍ଛା ବଳବତୀ ହେବାରୁ, ଏହି ଲେଖାର ସୂତ୍ରପାତ ହେଲା । ଇତିହାସ ଓ ପୁସ୍ତକମାନଙ୍କରୁ ବା Guide ପୁସ୍ତକମାନଙ୍କରୁ ପାଠକେ ଏଥିରେ ସନ୍ନିବେଶିତ ହୋଇ ଥିବା କେତେ ବିଷୟ ମଧ୍ୟ ପାଇପାରିବେ । କିନ୍ତୁ ମୁଁ ଯେତେକ ପରିଶ୍ରମ କରି ଏହି ଯେଉଁ ଭ୍ରମଣବୃତ୍ତାନ୍ତଟି ଲେଖିଅଛି, ତାହାର କଷ୍ଟ କେବଳ ମୁଁ ଜାଣେ ଓ ଯେଉଁ ସୁହୃଦୟ ପାଠକଗଣ ଏହା ପାଠକରି ତାହା ଉପଲବ୍ଧି କରିପାରିବେ, ସେମାନେ ମଧ୍ୟ କେତେଦୂର ଜାଣି ପାରନ୍ତି । ମୁଁ ଗର୍ବର ସହିତ ଏତିକି କହିପାରେ ଯେ ଉତ୍ତରଭାରତର ଯେତେଗୋଟି ସ୍ଥାନ ବିଷୟରେ ମୁଁ ବର୍ଣ୍ଣନ କରିଅଛି, ଯେ କୌଣସି ବ୍ୟକ୍ତି ମୋହର ଏହି ଭ୍ରମଣବୃତ୍ତାନ୍ତ ସାହାଯ୍ୟରେ ସେ ସ୍ଥଳଗୁଡ଼ିକ

ଅନାୟାସରେ Guide ପୁସ୍ତକ ବା ବ୍ୟକ୍ତିକୁ ଅପେକ୍ଷା ନକରି ଭ୍ରମଣ କରିପାରିବେ ।

Guide ପୁସ୍ତକମାନଙ୍କରେ ନମିଳିପାରିବା ଜିନିଷ ମଧ୍ୟ ଏଠାରେ କେତେକ ମୁଁ ସଂଗ୍ରହ କରିଅଛି । ସେ ସବୁ ଶିଳାଲିପିମାନଙ୍କରୁ ପଥ ପ୍ରଦର୍ଶକ (Guide) ମାନଙ୍କ ମୁଖରୁ, ଶିଖେନାମାମାନଙ୍କରୁ ଭ୍ରମଣକାଳୀ ସମୟରେ ଟିପାଖାତାରେ ଲେଖି, ପରେ ଗୃହରେ ବସି ବିସ୍ତାରିତ କରିଥାଏ । ମୂଳ ଓ ଉପାଦେୟ ଜେଗାମାନଙ୍କର ଫୋଟୋ ମଧ୍ୟ ସଙ୍ଗେ ୨ ନେଇଥାଏ । ବର୍ତ୍ତିମାନ ଗୃହରୁ ବାହାରିବା ଦିନାବଧି ପୁନରାବର୍ତ୍ତନ ପର୍ଯ୍ୟନ୍ତ ଯାହା ୨ ଦେଖିଲି, ଏକ ଡ଼ାଇରି ଆକାରରେ ପ୍ରତ୍ୟେକ ଦିନର ଘଟଣା ଧାରାବାହିକ ରୂପେ ଲେଖାଯାଉଅଛି । ଯେଉଁସ୍ଥଳ ଉପରୁ ଯେଉଁସ୍ଥଳକୁ ଯିବାକୁ ହେଲି, କ୍ରମାନ୍ୱୟରେ ତାହା ଭାଗମାନଙ୍କରେ ବିଭକ୍ତ କରି ବ୍ୟକ୍ତ କରାଯାଉଅଛି । ପ୍ରଥମରେ ଦିଲ୍ଲୀ ଯିବାହେତୁ ତାହାର ବିବରଣୀ ବର୍ତ୍ତମାନ ଦିଆଗଲା ।

୨୭—୩—୩୫

ଅଜଦିନ ରାତି ମେଲଗାଡ଼ିରେ କଲିକତା ଉଦ୍ଦେଶ୍ୟରେ ବାହାରିଲୁ । ଖଲିକୋଟ ରାଜାସାହେବ ମାନ୍ଦ୍ରାଜରୁ ଫେରି ସେହି ଗାଡ଼ିରେ ରମ୍ଭାପର୍ଯ୍ୟନ୍ତ ଗଲେ । ବ୍ରହ୍ମପୁର ଷ୍ଟେସନରେ ବଡ଼ଗଡ଼ର ଯୁବରାଜସାହେବଙ୍କୁ ଦେଖିଲୁ, ଶଶିବାବୁ, ପାଣିଗ୍ରାହୀ ଓ ଘନବନ୍ଧୁ ବାବୁଙ୍କୁ ମଧ୍ୟ ଦେଖିଲୁ ।

୨୮—୩—୩୫

ଖଡ଼୍ଗପୁର—କଲିକତା ମଧ୍ୟରେ ଅନେକ ପୋଲ ମରାମତି ହେଉଥିବାରୁ ସେଦିନ ମାନ୍ଦ୍ରାଜ ମେଲ ୧୦-୨୦ ଘଣ୍ଟା ସମୟରେ

ପହଞ୍ଚିବା ସ୍ଥଳେ ୧୧-୩୦ ଘଣ୍ଟାରେ ପହଞ୍ଚିଲା । କଲିକତାରେ ପହଞ୍ଚି ଶ୍ରୀଯୁକ୍ତ ଗୋପୀକ୍ରଷନଙ୍କ ଘରେ ଅବସ୍ଥାନ କଲୁ । ସ୍ୱଦ ୧୦-୬୦ରେ ଦିଲ୍ଲୀ ମେଲରେ ଅରୋହଣ କରି ଦିଲ୍ଲୀ ଉଦ୍ଦେଶ୍ୟରେ ଯାତ୍ରାକଲୁଁ ।

୬୧—୩—୩୬

ମୋଗଲ ସରାଇ ଷ୍ଟେଶନ ଠାରେ ରାତ୍ରଶେଷ ହେଲା । ଭାର -ତର ପୁରାଣ ଓ ଇତିହାସ ପ୍ରସିଦ୍ଧ ଦିଲ୍ଲୀନଗରୀର ସ୍ୱରୂପ ଦର୍ଶନ କରିବା ପାଇଁ ମୋର ଜୀବନରେ ଯେଉଁ ଆକାଙ୍କ୍ଷାଥିଲା, ଆଜ ତାହା ଫଳବତୀ ହେବ, ଏହି ଆଶାରେ ମୋର ପ୍ରାଣ ପୁଲକ ଯାଉଥାଏ । ଦିଲ୍ଲୀ ପହଞ୍ -ଚିବା ପୂର୍ବରୁ ପଥମଧ୍ୟର ଶୋଭା ଦେଖି ୬ ଅଲାହାବାଦ, କାନ୍ପୁର ଫତେପୁର, ଅଲିଗଡ଼ ପ୍ରଭୃତି ଷ୍ଟେଶନମାନ ଅତିକ୍ରମ କରି ୮-୪୦ ଠାରେ ଦିଲ୍ଲୀ ଷ୍ଟେଶନଠାରେ ପହଞ୍ଚିଲୁ । ଓଡ଼ଶାର ନେତା ବାବୁ ଭୁବନାନନ୍ଦ ଦାସ ଷ୍ଟେଶନ୍କୁ ଆମ୍ଭମାନଙ୍କ ସାକ୍ଷାତ୍କାର ଉଦ୍ଦେଶ୍ୟରେ ଆସିଥିଲେ । ଦିଲ୍ଲୀ ଷ୍ଟେଶନ ଖୁବ୍ବଡ଼ ।

ଦିଲ୍ଲୀ ଷ୍ଟେଶନରେ ଗାଡ଼ିରୁ ଅବରୋହଣ କରି, ଦିଲ୍ଲୀସହର ଉଦ୍ଦେଶ୍ୟରେ ବାହାରିଲୁ । ନଉଦିଲ୍ଲୀ ୧୩ [ଏ] ଫିରୋଜ ସା’ ରୋଡ଼ ଏସେମ୍ବ୍ଲି ମେମ୍ବରମାନଙ୍କ ବସାରେ ଆମ୍ଭମାନଙ୍କ ଅବସ୍ଥାନ ଆଗରୁ ନିରୂପିତ ହୋଇଥିଲା । ବାବୁ ଭୁବନାନନ୍ଦ ଦାସ ସେହିରୋଡ଼ ନମ୍ବର -ରେ ରହନ୍ତି । ତାଙ୍କ ସହିତ ଆଳାପ କରିବା ପାଇଁ ମୁଁ ଯାଇଥିଲି । ସର୍ଦ୍ଦାର ଶାନ୍ତ ସିଂ ମଧ୍ୟ ସେହିଠାରେ ରହନ୍ତି । ପଞ୍ଜାବ ପଶ୍ଚିମାଞ୍ଚଳ ଶିଖମାନଙ୍କ ତରଫରୁ ସେ ପ୍ରତିନିଧି ମନୋନୀତ ହୋଇଛନ୍ତି ।

କାଶ୍ମୀର ଅଧୁନାତନ ଜଳବାୟୁ ବେଶି ଥଣ୍ଡା ଥିବାରୁ ଏଠି ଗ୍ରୀଷ୍ମକାଳରେ ମଧ୍ୟ ପଂଖା ଦର୍କାର ହୁଏନାହିଁ, ବରଂ ସାହାନ୍ତିକୁ ବ୍ଲାଙ୍କେଟ୍ ଅବଶ୍ୟକ ହୁଏ । ଦିନବେଳେ ମଧ୍ୟ ଗରମ ପୋଷାକ ବ୍ୟବହାର ସୁଖକର ବୋଧହୁଏ ।

୩ —୩—୩୬

ଅପରାହ୍ଣ ୨ ୩-୩୦ ମିନଟ୍ ବେଳେ ଆଜ ଭାରତ ବ୍ୟବସ୍ଥା ପରିଷଦର ବୈଠକ ବସିଲା । ଭାରତର ଭାଗ୍ୟନିୟାମକ ଏହି ପରିଷଦର ଆଲୋଚନା ଶୁଣିବା ପାଇଁ ଯେ କୌଣସି ଦେଶପ୍ରାଣ ତଥା ଦେଶ ବ୍ୟବସ୍ଥାପକଙ୍କ ଇଚ୍ଛା ହେବା ସ୍ୱାଭାବିକ । ବୈଠକର ଏହି ସୁବିଧା ଓ ସୁଯୋଗ ଦେଖି, ଆମ୍ଭେମାନେ ସେହି ଦିନ ବୈଠକ ଆଲୋ-ଚନାରେ ଯୋଗ ଦେଇଥିଲୁ । ବିଶିଷ୍ଟ ଦର୍ଶକମାନଙ୍କ ପାଇଁ ଯେଉଁ ସ୍ଥାନ ନିର୍ଦ୍ଦେଶ କରାଯାଇଅଛି, ଆମ୍ଭେମାନେ ସେହି Distinguished galleryରେ ବସି ଆଲୋଚନା ଶୁଣିଲୁ । ପରିଷଦ ଭବନ (Assembly chambers) ମାନ୍ଦ୍ରାଜ ବ୍ୟବସ୍ଥାପକ ଭବନ ଅପେକ୍ଷା ବଡ଼ ପରି ବୋଧ ହେଲା । ପରିଷଦ ସଭାପତି ସାର୍ ଅବଦୁଲ ରହିମ ବର୍ତ୍ତମାନର ବ୍ରହ୍ମପୁର ସବ୍ କଲେକ୍ଟରଙ୍କ ପିତା ଅଟନ୍ତି । ପରିଷଦର ସମୁଦାୟ ମେମ୍ବର ସଂଖ୍ୟା ୧୪୫ । ଆଜ ଅର୍ଥ ସମ୍ବନ୍ଧୀୟ (finance bill)ର ବିଚାର ହେଉଥିଲା । କଂଗ୍ରେସର ଅନ୍ୟତମ ନେତା ଓ କଂଗ୍ରେସ-ପାର୍ଲାମେଣ୍ଟାରୀ ବୋର୍ଡର ସମ୍ପାଦକ ଶ୍ରୀଯୁକ୍ତ ସତ୍ୟମୂର୍ତ୍ତି ସରକାରଙ୍କ ମତ ଉପରେ ତୀବ୍ର ପ୍ରତିବାଦ କରୁଥାନ୍ତି । ତାଙ୍କ ବକ୍ତୃତା ମଧ୍ୟରେ ତାଙ୍କ ପରମ ଗୁରୁ ମିଃ ଗାନ୍ଧୀଙ୍କ ନାମୋଚ୍ଚାରଣ କରୁଥାନ୍ତି ।

ଅଧିବେଶନ ପରେ ପରିଷଦ ପ୍ରାଙ୍ଗଣ (courtyard)ରେ ମୁସଲମାନ ମେମ୍ବରମାନେ ସାର୍ ଜୋଷଫ୍ ଭୋରଙ୍କ ଉଦ୍ଦେଶ୍ୟରେ ଏକ ଉଦ୍ୟାନ ମିଳନର ଅୟୋଜନ କରିଥିଲେ । ଉକ୍ତ ମିଳନରେ ଆମ୍ଭେମାନେ ମଧ୍ୟ ଯୋଗ ଦେଇଥିଲୁ । ଶ୍ରୀଯୁତ ମାଳକଣ୍ଠ ଦାସ ଓ କଲ୍ଲିକୋଟର ରାଜାଙ୍କ ସହିତ ଅମ୍ଭମାନଙ୍କ ସାକ୍ଷାତ ସେହି ଦିନ ହୋଇଥିଲା । କାଉନ୍‌ସିଲ୍—ଷ୍ଟେଟ ମେମ୍ବର ମାନ୍ଦ୍ରାଜର ଭୂତପୂର୍ବ ଜଷ୍ଟିସ ମିଃ ମେନନ ଓ ମି ପୁରଓ୍ୱାଦଙ୍କ ସହିତ ମଧ୍ୟ ଅଳାପ ହୋଇଥିଲା । ମିଃ ମେନନ୍‌ଙ୍କ ପୁତ୍ର ପାଲମ ଜିଲ୍ଲାର କଲେକ୍ଟର ଥିଲେ । ମିଃ ପୁରଓ୍ୱାଦ ସାର ରହିମଙ୍କ ଭଣିଜିଙ୍କୁ ବିବାହ କରିଅଛନ୍ତି । ଉଦ୍ୟାନ ମିଳନ ପରେ ପୁରୁଣା ଦିଲ୍ଲୀ ଓ ଦୁର୍ଗ ମଧ୍ୟ ଦେଇ ମୋଟର ଚଳାଇଲୁ । ଦିଲ୍ଲୀର ଦର୍ଶନୀୟ Ridge ଦେଇ ମୋଟରରେ ବୁଲିଲୁ । ଏଠାରୁ ଦିଲ୍ଲୀ ସହର ସମୁଦାୟ ଭଲ ଦୃଶ୍ୟ ମିଳେ । ଏହା ଅରାବଲୀ ପର୍ବତ-ମାଳାର ଶେଷ ଉପତ୍ୟକା । ପ୍ରସିଦ୍ଧ ସିପାହି ବିଦ୍ରୋହର ସ୍ମାରକ ସ୍ଥଳ (Mutiny movement) ମଧ୍ୟ ଦେଖିଲୁ । ଏ ସମସ୍ତ ଐତିହାସିକ ସ୍ଥଳ ଦେଖିବା ଦ୍ୱାରା ଭାରତର ଉତ୍ଥାନ ପତନର ଅବସ୍ଥା ଅମ୍ଭମାନଙ୍କ ମନଶ୍ଚକ୍ଷୁରେ ଯୁଗପତ୍ ପ୍ରତିବିମ୍ବିତ ହେଲା । ଏହି ସମସ୍ତ ପ୍ରସିଦ୍ଧ ଦୃଶ୍ୟମାନ ଦେଖି ସେ ଦିନ ଅମ୍ଭମାନଙ୍କ ପ୍ରବାସ ଗୃହକୁ ଫେରିଲୁ । ଦିଲ୍ଲୀଦୁର୍ଗ ଲାଲ ପଥରରେ ନିର୍ମିତ ହୋଇଥିବାରୁ ଏହାର ନାମ "ଲାଲକିଲ୍ଲା" । ଏହା ସାଜାହାନଙ୍କ ଦ୍ୱାରା ୧୬୩୮ ଠାରୁ ୧୬୪୮ରେ ନିର୍ମିତ ହୋଇଥିଲା । ଏହାର ସବିଶେଷ ବିବରଣୀ ପରେ ଦିଆଯିବ ।

୩୧—୩—୩୫

ସାର ଜୋଷଫ ଭୋରଙ୍କ ସହିତ ସାକ୍ଷାତ କରିବା ପାଇଁ ୧୦

ସନ୍ଧ୍ୟା ବେଳେ ଗଲୁ । ସେ ୧୯୧୪ ଖ୍ରୀଷ୍ଟାବ୍ଦରେ ବ୍ରହ୍ମପୁରରେ ଥିବା କଥା କହିଲେ । ମିସେସ ଭେର ମଧ୍ୟ ସେହି କଥା କହିଲେ । ସେହି ଦିନ କଲେଇକୋଟର ରାଜାଙ୍କ ସହିତ ସାକ୍ଷାତ ହେଲା । ତାଙ୍କ ଝିଅ କଲି-କତା କରେନ୍ସି ଅଫିସରଙ୍କୁ ବିବାହ କରିଅଛନ୍ତି । ତାଙ୍କ ସହିତ ମଧ୍ୟ ସାକ୍ଷାତ୍ ଓ ଆଳାପ ହେଲା ।

## କୁତୁବ୍ ମିନାର

ଭାରତ ପ୍ରସିଦ୍ଧ କୁତୁବ୍ ମିନାର୍ ଦେଖିବା ସୁଯୋଗ ଅଦ୍ଯ ଅମ୍ଭ-ମାନଙ୍କ ଭାଗ୍ୟରେ ଘଟିଥିଲା । ସନ୍ଧ୍ୟା ହୋଇ ଯାଇ ଥିବାରୁ ଉପରକୁ ଯାଇ ପାରିଲୁ ନାହିଁ । କେବଳ ମିନାର୍‌ର ବହିର୍ଭାଗ ପରିଦର୍ଶନ କରି ଫେରି ଆସିଲୁ । ଭାରତର ହିନ୍ଦୁ ଚକ୍ରବର୍ତ୍ତୀ ପୃଥ୍ୱୀରାଜ ଏହି କୁତୁବ୍ ମିନାର ଖ୍ରୀ: ୧୧୯୦ରେ ନିର୍ମାଣ କରିଥିଲେ । କଥିତଅଛି ପୃଥ୍ୱୀରାଜଙ୍କ ଦୁହିତା 'ବେଲା' ପ୍ରତିଦିନ ଭୋଜନ ପୂର୍ବରୁ ଯମୁନା ନଦୀ ଦର୍ଶନ କରନ୍ତି । ଦୁହିତାଙ୍କର ଏହି ଦର୍ଶନ ସୁବିଧା ପାଇଁ ସନ୍ତାନ ବତ୍ସଳ ପୃଥ୍ୱୀରାଜ ଏହି ପ୍ରକାଣ୍ଡ ପ୍ରାସାଦ ନିର୍ମାଣ କରାଇଥିଲେ । ପରେ କୁତୁବୁଦ୍ଦିନ ଆଇବାକ୍ ଏହି ପ୍ରାସାଦର ସୌଷ୍ଠବ ବର୍ଦ୍ଧନ ସକାଶେ କେତେକ ଅବଶ୍ୟକୀୟ ପରି-ବର୍ତ୍ତନ କରି ପୁନଃ ନିର୍ମାଣ ଆରମ୍ଭ କଲେ ଓ ତାହାଙ୍କର ଏହି ନିର୍ମାଣ କାର୍ଯ୍ୟ ଖ୍ରୀ ୧୨୧୨ରେ ସମ୍ସୁଦ୍ଦିନ ଅଲ୍‌ତାମାସ୍‌ଙ୍କ ଦ୍ୱାରା ଶେଷ ହୋଇଥିଲା ।

କୁତୁବ୍ ମିନାରର ଉଚ୍ଚତା ୨୩୪ ଫୁଟ । ଏହା ରଙ୍ଗ ପ୍ରସ୍ତର ଓ ଉପରଭାଗ ଫିହିମଲ୍ ପ୍ରସ୍ତରରେ ନିର୍ମିତ ହୋଇଅଛି । ସମସ୍ତ ପ୍ରାସାଦ ପଞ୍ଚ ବା ସ୍ତରରେ ନିର୍ମିତ ହୋଇଅଛି । ପ୍ରତ୍ୟେକ ସ୍ତରରେ

ଗୋଟିଏ ଗୋଟିଏ ବାରଣ୍ଡା ବା ଉପବାସ ନିର୍ମିତ ହୋଇଅଛି । ମିନାରର ଉପରଭାଗ ବଜ୍ରପାତରେ ବିନଷ୍ଟ ହୋଇଥିବାରୁ ସେଥିର ଅବିକଳ ପ୍ରତିମୂର୍ତ୍ତି ବା ପ୍ରତିରୂପ ଲର୍ଡ ହାର୍ଡିଂ ନିର୍ମାଣ କରାଇ ଅଛନ୍ତି । ଏହି ପ୍ରାସାଦ ମଧ୍ୟରେ ଏକ ଘୋଲଥିଲା, ଯେଉଁଥିରେ ଏକ କାଠ ପତାକା ଝୁମୁଥିଲା । ବଜ୍ରପାତରେ ତାହା ଜଳିଯାଇଥିବା ଜଣାଯାଏ ।

ମିନାରର ନିମ୍ନସ୍ତରର ପରିଧି ୪୬'-୮" ଓ ଉପରଭାଗ ପରିଧି ୯ଫୁଟ ଅଟେ । ସମଗ୍ର ପ୍ରାସାଦରେ ୩୭୯ ଗୋଟି ପାବଚ୍ଛ ଅଛି । ମିନାର ନିକଟରେ ମହାରାଜ ପୃଥ୍ୱୀରାଜଙ୍କ ନିର୍ମିତ ହିନ୍ଦୁମନ୍ଦିର ବିଦ୍ୟମାନ ଥିଲା । ତାହା କିନ୍ତୁ ବର୍ତ୍ତମାନ ଭଗ୍ନାବଶେଷ, କାରଣ କୁତୁବୁଦ୍ଦିନ୍ ଏହି ମନ୍ଦିର -ମାନଙ୍କ ପ୍ରସ୍ତରରେ ଏକ ପ୍ରକାଣ୍ଡ ମସଜିଦ୍ ନିର୍ମାଣ ପ୍ରୟାସୀ ହେଲେ । ଅବଶ୍ୟ ହିନ୍ଦୁମନ୍ଦିର ଧ୍ୱଂସ ସାଧନ ହେଲା, କିନ୍ତୁ ମସଜିଦ୍ ପୂର୍ଣ୍ଣ ହୋଇ ପାରିଲା ନାହିଁ । କୁତ୍ବୁଦ୍ଦିନଙ୍କ ଉତ୍କଟ ଲାଳସାର ସ୍ମାରକ ସଦୃଶ୍ୟ ଏବେ ଏହି ମିନାର ନିକଟରେ ତିନିଗୋଟି ବୃହତ ଖିଲାନ ବା ଆର୍ଚ୍ଚ ଅର୍ଦ୍ଧ ନିର୍ମିତ ହୋଇ ରହିଅଛି । କୁତୁ-ବୁ-ଦ୍ଦିନ ମିନାର୍ ସଦୃଶ୍ୟ ଆଉ ଗୋଟିଏ ଗୋଟି ସ୍ତମ୍ଭ—ପ୍ରାସାଦ ନିର୍ମାଣ କରିବାପାଇଁ ଦୃଢ଼ ସଙ୍କଳ୍ପ କରିଥିଲେ । କିନ୍ତୁ ତାହା ହୋଇ ପାରିଲାନାହିଁ । ଗୋଟିଏ ମାତ୍ର ଅର୍ଦ୍ଧ ନିର୍ମିତ ଅବସ୍ଥାରେ ରହିଅଛି ।

ଏ ସମସ୍ତ ଘଟଣାରୁ ଜଣାଯାଏ ଭାରତର ଇତିହାସ ଯୁଗରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ବୈରଭାବ ଯଥେଷ୍ଟ ଥିଲା । ହିନ୍ଦୁଧର୍ମର ବିଲୋପ ସାଧନ ପାଇଁ ମୁସଲମାନଙ୍କ ବଳବତୀ ଇଚ୍ଛାଥିଲା ।

ଏହି ପ୍ରାସାଦରେ ପ୍ରାଚୀନଭାରତର ଶିଳ୍ପ—ବୈଚିତ୍ର୍ୟ କେତେକାଂଶରେ ସ୍ପଷ୍ଟ ଦେଖାଯାଏ । ଦକ୍ଷିଣ ଭାରତର ରାମେଶ୍ୱର ଓ ମଥୁରାର

ମନ୍ଦିର ଶିଳ୍ପସ୍ଥାପତ୍ୟ ସହିତ ଏହି ପ୍ରାସାଦର ସାମଞ୍ଜସ୍ୟ ଅଳ୍ପତର ପ୍ରତୀୟମାନ ହୁଏ, କୁତୁବ୍ ମିନାର ପ୍ରାଙ୍ଗଣରେ ଗୋଟିଏ ପ୍ରକାଣ୍ଡ ଲୌହସ୍ତମ୍ଭ ବିଦ୍ୟମାନ ଅଛି । କଥିତହୁଏ, ଏହା ହିନ୍ଦୁରାଜା "ଧାବା"ଙ୍କ ଦ୍ୱାରା ଖ୍ରୀ:୩୧୯ ପୂର୍ବରେ ନିର୍ମିତ ହୋଇଥିଲା । ଏହି ସ୍ତମ୍ଭ ଅଷ୍ଟଧାତୁରେ ଏହାର କଳେବର ପୂର୍ଣ୍ଣଥିବା କଥା କଥିତ ହେଉଅଛି । ଏଥିରେ ପାଣିପଡିଲେ,ତେଲରେ ପଡିଲା ଭଳି ଖସିଯାଏ । ଏହି ଲୌହ ସ୍ତମ୍ଭଦେହରେ ଗୋଟିଏ ତୋପ—ଗୁଳା ଚିହ୍ନ ଅଙ୍କିତ ଥିବା ଆମ୍ଭେ-ମାନେ ଦେଖିଲୁଁ । ନାଦୀରଶାହା ଏହି ସ୍ତମ୍ଭର ଦୃଢ଼ତା ପରୀକ୍ଷା କରିବା -ପାଇଁ ତୋପ ପ୍ରୟୋଗ କରିଥିଲେ । ଫଳରେ ସ୍ତମ୍ଭ ଦେହରେ ପାଖ-ଇଞ୍ଚ ପରିଧି ଓ ତିନିଇଞ୍ଚ ଗଭୀରର ଗୋଟିଏ ଚିହ୍ନ ଛଡ଼ା ଆଉ କିଛି ହେଲାନାହିଁ । ଏଥିରୁ ସ୍ତମ୍ଭ ଦୃଢ଼ତା ସ୍ପଷ୍ଟ ହୁଏ । ସ୍ତମ୍ଭର ମଧ୍ୟଭାଗରେ ସଂସ୍କୃତରେ ଛ'ଟି ପଂକ୍ତି ଲେଖାଅଛି । ପ୍ରଦର୍ଶକ (Guide)ଠାରୁ ଶୁଣିଲୁ ଏହି ସ୍ତମ୍ଭରେ ଯେଉଁ ବ୍ୟକ୍ତିର କୁଣ୍ଢ ପାଏନାହିଁ, ସେ 'ଜାରଜ' ପୁତ୍ର ଅଟେ । ଦେଖିଲୁ ଅନେକ ଦର୍ଶକ କୁତୂହଳବଶତଃ ପରୀକ୍ଷା କରନ୍ତି ।

କୁତୁବ୍ ମିନାର ଗୃହପାର୍ଶ୍ୱରେ ପାର୍ସିଲିପିରେ ଭଗବାନଙ୍କ ନାମ "ଅଲ୍ଲା" ଇତ୍ୟାଦି ଖୋଦିତ ହୋଇଅଛି । ଏହାର ଶିଳ୍ପ ନୈପୁଣ୍ୟ ଅତି ଚମତ୍କାର ।

ଦୁଃଖର ବିଷୟ ଏହି ପ୍ରକାଣ୍ଡ ଐତିହାସିକ ସୌଧ ଦିନକୁ ଦିନ ବିଲୀନ ହେଉଅଛି ବା ବସି ଯାଉଅଛି । ଗତ ୧୯୩୪ ଜାନୁୟାରି-ମାସରେ ଯେଉଁ ଭୂକମ୍ପ ହୋଇଥିଲା ସେଥିରେ ଏହାମଧ୍ୟ ଫାଟି ଯାଇଅଛି । କର୍ତ୍ତୃପକ୍ଷ ଫାଟି ଯାଇଥିବା ସ୍ଥାନମାନ ପୁନରପି ଫାଟିବା ଜଣାଯିବାପାଇଁ ସିମେଣ୍ଟ ଓ କାଚଖଣ୍ଡ ବସାଇ ଅଛନ୍ତି ।

ମିନାର ଉପରକୁ ଯେଉଁ ସୋପାନ ଶ୍ରେଣୀ ପଡ଼ିଅଛି, ତାହା ପ୍ରଥମେ ପ୍ରଶସ୍ତ ହୋଇ ଶେଷକୁ ଅତି ସଙ୍କୀର୍ଣ୍ଣ ହୋଇଅଛି । ପୂର୍ବ କଥିତ ପ୍ରକାରେ ବଜ୍ରପାତଦ୍ୱାରା ଏହାର ଉପରଭାଗ ଭଗ୍ନ ହୋଇ ଯାଇ-ଅଛି । ସୁତରାଂ ଦର୍ଶକମାନଙ୍କ ବିପଦବାରଣ ପାଇଁ ଦ୍ୱାରପାର୍ଶ୍ୱରେ ଲୌହବାଡ଼ ଆବୃତ ହୋଇଅଛି । ପ୍ରାସାଦର ପୂର୍ଣ୍ଣ ସୌଷ୍ଠବ ଦେଖା-ଇବା ପାଇଁ ଏହାର ଉପର ଭଗ୍ନଅଂଶ ଅନୁରୂପ ଲର୍ଡ ହାର୍ଡିଂ ଏକ ପ୍ରାସାଦ ଶିଖର ନିର୍ମାଣ କରାଇଦେଇ ବଗିଚା ମଧ୍ୟରେ ଏକ ମଣ୍ଡପରେ ରଖାଇ ଅଛନ୍ତି ।

ମିନାର ଦର୍ଶନ ପରେ ଅଲାଉଦ୍ଦିନ୍ ଗେଟ୍ ବା ଦ୍ୱାର ଆମ୍ଭେମାନେ ଦେଖିଲୁ । ଏହା ମଧ୍ୟ ସ୍ଥାପତ୍ୟ ଜଗତରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ଅଲାଉଦ୍ଦିନ୍ ଖିଲିଜ୍ ଏହା ୧୩୧୦ ଖ୍ରୀଷ୍ଟପୂର୍ବରେ ନିର୍ମାଣ କରିଥିଲେ । ସୁତରାଂ ଏହାର ନାମ କରଣ "ଅଲାଉଦ୍ଦିନ୍‌ଗେଟ୍" ବୋଲି ହୋଇଅଛି । ଏହା ରଙ୍ଗ ପ୍ରସ୍ତର (Red Sand Stone)ରେ ନିର୍ମିତ, ମଧ୍ୟେ ମାର୍ବଲ ପ୍ରସ୍ତର ସମାବେଶ ହୋଇ ଅତିସୁନ୍ଦର ଦେଖା -ଯାଏ । କ୍ରମେ ସନ୍ଧ୍ୟା ହେବାରୁ ଆମ୍ଭେମାନେ ସେଠାରୁ ଫେରିଲୁ ।

କୁତ୍‌ବୁବ୍ ମିନାର ଦର୍ଶନପରେ ଆମ୍ଭେମାନେ ଭାରତର ଶିଳ୍ପ ପ୍ରଦର୍ଶନୀ ଦେଖିବାକୁ ଗଲୁ । ଏହି ପ୍ରଦର୍ଶନୀ ମଣ୍ଡପରେ ଯେଉଁ ପଦାର୍ଥ-ମାନ ସ୍ଥାନ ପାଇଥିଲା ସେ ସମସ୍ତ ଭାରତୀୟ ତିଆରି । ସେ ସମସ୍ତ ମଧ୍ୟରେ ସ୍ୱଦେଶୀ ସାବୁନ୍, ସୁବାସିତ ତୈଳ, ଅତର, ସେଣୋର ତିଆରି ପାନିଆ, ବମ୍ବେଇ ରୂପାମିନା କାମ, Godrej & Boyee ର ଲୁହାପେଡ଼ି ପ୍ରଭୃତି ପଦାର୍ଥମାନ ସର୍ବୋତ୍କୃଷ୍ଟ ବିବେଚିତ ହୋଇଥିଲା । Godrej & Boyeeର ଯେଉଁ ଲୁହାପେଡ଼ି, ତାହା ଭାରତୀୟ

ଟାଟାକମ୍ପାନୀ ଲୁହାରେ ପ୍ରସ୍ତୁତ ହୋଇଥିଲା । ଭାରତୀୟ କଳ—କାରଖାନା ପ୍ରସ୍ତୁତ ପଦାର୍ଥମାନ ମଧ୍ୟ ଏହି ପ୍ରଦର୍ଶନୀରେ ଶୋଭା ପାଉଥିଲା । ବୋତାମ, ଜରିକାର୍ଯ୍ୟ ଭିତରେ Electric Bulb works Ltd. Lyons Range, Calcutta ପ୍ରଭୃତି କମ୍ପାନୀ ପ୍ରସ୍ତୁତ ପଦାର୍ଥମାନ, ଇଂଲଣ୍ଡ ଓ ଜାପାନ କଳ—କାରଖାନା ପ୍ରସ୍ତୁତ ପଦାର୍ଥ ସହିତ ଉପଯୁକ୍ତ ପ୍ରତିଯୋଗୀ । Chocalate ତିଆରି କାରଖାନା Standard manufacturing Com-pany, Sadar Bazar, Delhi, ବିଦେଶ ଅନୁଷ୍ଠିତ Catbery frys ଇତ୍ୟାଦି କମ୍ପାନୀମାନଙ୍କ ସହିତ ଉପଯୁକ୍ତ ପ୍ରତିଯୋଗିତା କରି ପାରୁଅଛି ।

ପ୍ରଦର୍ଶନୀ ଦେଖିଲା ପରେ ଆମ୍ଭର ନିର୍ଦ୍ଦିଷ୍ଟ ବାସଗୃହକୁ ଫେରିଲୁ ।

୧—୪—୩୫

ଆଜିସକାଳେ କେଉଁଆଡ଼େ ଯାଇପାରିଲୁ ନାହିଁ । କଳ୍ଲୀକୋଟ ରାଜାସାହେବ ଆମ୍ଭମାନଙ୍କ ସାକ୍ଷାତ୍କାର ଉଦ୍ଦେଶ୍ୟରେ ଆସିଥିଲେ । ତାଙ୍କ ସହିତ ନାନା କଥାବାର୍ତ୍ତା ଓ ଆଳାପ ସମ୍ଭାଷଣରେ ଆଜିର ପୂର୍ବାହ୍ନ-ବେଳା କଟି ଯାଇଥିଲା ।

ଅପରାହ୍ନ ପୁଣି ବ୍ୟବସ୍ଥା ସଭା ଦେଖିବାକୁ ଯାଇଥିଲୁ । ସେ ଦିନ ଲବଣଶୁଳ୍କ [Salt tax] ଉଠାଇଦେବା ବିଷୟରେ ବିଚାର ଚାଲିଥାଏ । କଂଗ୍ରେସ ମେମ୍ବରମାନେ Cut Propose ବା ଉଚ୍ଛେଦ ପ୍ରସ୍ତାବ କରୁଥାନ୍ତି । ବ୍ୟବସ୍ଥା ସଭାର କାର୍ଯ୍ୟ-କ୍ରମର ସମ୍ପୂର୍ଣ୍ଣ ବିବରଣୀ ସେଦିନ ଆମ୍ଭେମାନେ ଶୁଣି ନପାରି ଥିଲେ ମଧ୍ୟ

ପ୍ରସ୍ତାବର ସାରମର୍ମ କେବଳ ଗ୍ରହଣକରି ଆମ୍ଭମାନଙ୍କ ନିର୍ଦ୍ଦେଶ ଅନୁସାରେ ଅନ୍ୟଅଡ଼େ ବାହାରି ଯାଇଥିଲୁ ।

———:o:———

# ଇନ୍ଦ୍ରପ୍ରସ୍ଥ

୨—୪—୩୫

ଅଜ ସକାଳୁ ମିଃ ବିଃ ଦାସ ଆମ୍ଭମାନଙ୍କୁ ସାକ୍ଷାତ କରିବାକୁ ଆସିଥିଲେ । ତାଙ୍କ ସହିତ କଥାବାର୍ତ୍ତା ହେଲାପରେ ପୁରୁନା କିଲ୍ଲା ବା ପାଣ୍ଡବ କିଲ୍ଲା ଦର୍ଶନ ଉଦ୍ଦେଶ୍ୟରେ ବାହାରିଲୁ । ପୁରୁନା କିଲ୍ଲା ବା ପାଣ୍ଡବ କିଲ୍ଲା ନୂଆଁ ଦିଲ୍ଲୀର ପ୍ରାୟ ତିନିମାଇଲ ଦୂରରେ ଅବସ୍ଥିତ । ଏହା ପ୍ରାଚୀନ ଇନ୍ଦ୍ରପ୍ରସ୍ଥ ଅଟେ । ପ୍ରାୟ ୫୦୦୦ ବର୍ଷ ପୂର୍ବେ ଯୁଧିଷ୍ଠିର ମହାରାଜା ଏହି ଇନ୍ଦ୍ରପ୍ରସ୍ଥ ପୀଠରେ ସ୍ୱୀୟ ମହାରାଜତ୍ୱ କରିଥିଲେ । ଏହି ମହାରାଜତ୍ୱ ଭାରତର କାହିଁକି ଜଗତର ଅତୁଳନୀୟ ଓ ସ୍ମରଣୀୟ । ଯୁଧିଷ୍ଠିରଙ୍କ ପବିତ୍ର ସାମ୍ରାଜ୍ୟ ଶାସନ ତାଙ୍କ ଅତୁଲ୍ୟ ପବିତ୍ର ପ୍ରତିଭା ସଙ୍ଗେ ଯେଉଁପରି ଜଡ଼ିତ, ପୁରାଣ ପ୍ରସିଦ୍ଧ ଦେବ ଦୁର୍ଲ୍ଲଭ ଏହି ପୂଣ୍ୟମୟୀ ନଗରୀ ସଙ୍ଗେ ମଧ୍ୟ ସେହିପରି ଜଡ଼ିତ । ଆଜି ଇନ୍ଦ୍ରପ୍ରସ୍ଥର ସେହି ସ୍ୱର୍ଗୀୟ ସୌନ୍ଦର୍ଯ୍ୟବତା ନାହିଁ, ସେହି ରାଜଧାନୀର ସାତ୍ତ୍ୱିକ ବିଭୂତି ବିଲୁପ୍ତ ହୋଇଅଛି । ମହାରାଜା ଯୁଧିଷ୍ଠିରଙ୍କ ଧର୍ମ ପ୍ରବଣ ରାଜନୀତି ନାହିଁ । ଯେଉଁମାନେ ହିନ୍ଦୁ ସେହିମାନେ ଏହି ପୂଣ୍ୟମୟୀ ନଗରୀ ଦର୍ଶନ କରି କେବଳ ସେହି ମହାମହିମ ମହାରାଜା ଯୁଧିଷ୍ଠିରଙ୍କୁ ସ୍ମରଣ କରି ଭାରତର ଧର୍ମ-କର୍ମମୟ ମହାଜୀବନ କଳ୍ପନା କରି ଫେରି ଆସନ୍ତି ମାତ୍ର ।

କଳ୍କି ପୁରାଣ ଓ ଇନ୍ଦ୍ରପ୍ରସ୍ଥ ମାହାତ୍ମ୍ୟରେ ଲିଖିତ, ଏହି ନଗରୀ ଜଣେ ପିଶାଚୀ ଦ୍ୱାରା ନିର୍ମିତ ହୋଇଥିଲା । ଏହା ତାହାଙ୍କ ଦ୍ୱାରା ବୈଭବରେ ଅଦ୍ୱିତୀୟ ଥିଲା । କଥିତ ଅଛି ଦେବରାଜ ଇନ୍ଦ୍ର ଏହି ଠାରେ ଯଜ୍ଞ ଅନୁଷ୍ଠାନ କରିଥିଲେ । ମହାରାଜ ଯୁଧିଷ୍ଠିର ଦେବ-ରାଜଙ୍କ ଅନୁଷ୍ଠିତ ଏହି ଯଜ୍ଞପୀଠ ମହା ପବିତ୍ର ସ୍ଥଳ ଭାବି ସେହିଠାରେ ଶାସନ ପୀଠ ନିର୍ମାଣ କରିବା ପାଇଁ 'ମାୟା' ପିଶାଚୀକୁ ଆଦେଶ ଦେଲେ । ପିଶାଚୀ ମହାରାଜଙ୍କ ଆଦେଶ କ୍ରମେ ସ୍ୱୀୟ କଳା କୌଶଳର ପରାକାଷ୍ଠା ମୂର୍ତ୍ତି କରି ମହାରାଜଙ୍କୁ ଭେଟ କରିଥିଲେ । ଯୁଧିଷ୍ଠିର ଏହି ପୂଣ୍ୟ ବୈଚିତ୍ର୍ୟମୟ ଦୁର୍ଗରେ ସେହିଦିନଠାରୁ ମହାରାଜତ୍ୱ ଆରମ୍ଭ କରିଥିଲେ । ଏହି ଦୁର୍ଗରେ ରାଜତ୍ୱ ଆରମ୍ଭ କରିବା ପୂର୍ବେ ଦଶ ସହସ୍ର ବ୍ରାହ୍ମଣମାନଙ୍କ ଭୋଜନ ଅନୁଷ୍ଠିତ ହୋଇଥିଲା । ଇନ୍ଦ୍ରପ୍ରସ୍ଥର ସେହି ପୁରାଣ କଥିତ ଶିଳ୍ପ ବୈଭବ ନାହିଁ, କିନ୍ତୁ ତାହାର ଭଗ୍ନାବଶେଷ ବିଦ୍ୟମାନ ଅଛି ଓ ସେଥି ସଙ୍ଗେ ସଙ୍ଗେ ଦୁର୍ଗର ଭଗ୍ନାଂଶମାନ ମଧ୍ୟ ଅଛି । ପାଠକମାନଙ୍କ କୌତୁହଳ ପାଇଁ ତାହା ନିମ୍ନରେ ଦିଆଯାଉ ଅଛି ।

———:o:———

## କୁନ୍ତୀ ମନ୍ଦିର୍

କୁନ୍ତୀ ମନ୍ଦିର—ଆକାରରେ ଛୋଟ ଅଟେ । ଏହା ମସ୍‌ଜିଦ୍‌ମାନଙ୍କ ଡ଼ୋମ ଆକାରରେ ନିର୍ମିତ । କିନ୍ତୁ ଯେଉଁ ଶିବଙ୍କ ନିତ୍ୟ ପୂଜା ସେବା କରନ୍ତି ସେହି ଶିବ ମନ୍ଦିର ଏହି କୁନ୍ତୀ ମନ୍ଦିର ନିକଟରେ ବିଦ୍ୟମାନ । ଏହି ଶିବଲିଙ୍ଗ "ଯୋଗେଶ୍ୱର ମହାଦେବ" ନାମରେ କଥିତ । ଏହାଙ୍କ

ନିକଟରେ ହନୁମାନ ମଧ ଅଛନ୍ତି । ଏହି ମନ୍ଦିର ନିକଟରେ ଆଉ ଗୋଟିଏ ଛୋଟ ମନ୍ଦିରରେ ଦ୍ରୌପଦୀ,ଗାନ୍ଧାରୀ କୁନ୍ତୀନାମରେ ତିନୋଟି ଛୋଟ ବିଗ୍ରହ ସହିତ ଦୁର୍ଗା ଏକ ବଡ଼ ବିଗ୍ରହ ପ୍ରତିଷ୍ଠିତ ଅଛନ୍ତି । ବିଗ୍ରହମାନ ସିଂହ ମଲ୍ ମଲ୍ ପ୍ରସ୍ତରରେ ନିର୍ମିତ । ଦ୍ରୌପଦୀ ପ୍ରଭୃତି ତିନୋଟି ଛୋଟ ବିଗ୍ରହ ଏକଫୁଟ ଉଚ୍ଚ ଓ ଦୁର୍ଗା ବିଗ୍ରହ ଦେଢ଼ଫୁଟ ଉଚ୍ଚ । ଏହି ବିଗ୍ରହମାନଙ୍କ ପୂଜା ହିନ୍ଦୁ ବ୍ରାହ୍ମଣମାନେ ସନାତନ କର୍ମକାଣ୍ଡ ପ୍ରକାରେ କରନ୍ତି । ଏମାନଙ୍କୁ ଦୁଇଥର ଭୋଗ ହୁଅନ୍ତି ।

———:o:———

## ୨-ପାଣ୍ଡବ ବାଉଡ଼ି (ବାପୀ)

ଏହା ଇନ୍ଦ୍ରପ୍ରସ୍ଥ ଦୁର୍ଗ ଅଭ୍ୟନ୍ତରରେ ବିଦ୍ୟମାନ । ବର୍ତ୍ତମାନ ଏହି ବାପୀ ବା କୂପରେ ୩୦ଫୁଟ ପର୍ଯ୍ୟନ୍ତ ଜଳ ପୂର୍ଣ୍ଣ ଅଛି । [Guide] ପ୍ରଦର୍ଶକଠାରୁ ଶୁଣିଲୁ ଭୀମ ଓ ଅର୍ଜୁନ ଏହି ବାପୀକୁ ସ୍ନାନ ଉଦ୍ଦେଶ୍ୟରେ ଉପର ସ୍ଥଳରୁ ଡେଇଁ ସ୍ନାନପରେ ସୋପାନ ଶ୍ରେଣୀ ଦେଇ ବାହାରକୁ ଆସୁଥିଲେ । ଭାରତ ସରକାର ଏହି ପୁରାଣ ପ୍ରସିଦ୍ଧ ବାପୀକୁ ଉପଯୁକ୍ତ ଭାବେ ସଂରକ୍ଷଣ କରି ଅଛନ୍ତି ।



## ୩--ପାଣ୍ଡବ ଦରବାର

ଏହାପରେ ପାଣ୍ଡବ ଦରବାର ଦର୍ଶକର ଦୃଷ୍ଟି ଗୋଚର ହୁଏ । ମହାରାଜ ଯୁଧିଷ୍ଠିରଙ୍କ ସମୟରେ ଏହା ତାଙ୍କ ଦରବାର ଭବନ ହୋଇଥିଲା । ଅନେକ କାଳପରେ ଯେତେବେଳେ ଏହା

ମୁସଲମାନଙ୍କ ହସ୍ତଗତ ହେଲା ସେରଶାହା ଏହା ସଙ୍ଗି ଗୋଟିଏ ମସଜିଦ୍ ନିର୍ମାଣ କରିଦେଲେ । ୧୫୪୧ ଖ୍ରୀଷ୍ଟାବ୍ଦରେ ଏହି ମସଜିଦ୍ ସେରସାହ ଦ୍ୱାରା ନିର୍ମିତ ହୋଇଅଛି । ଏହାର ଲମ୍ବ ୧୬୨ ଫୁଟ, ଓସାର ୫୬ ଫୁଟ ଓ ଉଚ୍ଚ ୫୨ ଫୁଟ ।

ବହିର୍ଭାଗରୁ ଏହା ମସଜିଦ୍ ଅଟଇ ପର ଦିଶିଲେ ମଧ୍ୟ ଅଭ୍ୟନ୍ତର ପ୍ରକୋଷ୍ଠରେ ମଲ୍ ମଲ୍ ପ୍ରସ୍ତର ନିର୍ମିତ ଅର୍ଦ୍ଧ ବା ଖିଲନ୍ ଥିବାର ପାଞ୍ଚଗୋଟି ପୀଠ ଦେଖାଯାଏ । ଏହା ଯୁଧିଷ୍ଠିର ଏବଂ ଅନ୍ୟ ପାଣ୍ଡବମାନଙ୍କ ଆସନ ବୋଲି କଥିତ ଅଛି ପୁଣି ତାହା ମଧ୍ୟ ସ୍ପଷ୍ଟ ପ୍ରତୀୟମାନ ହୁଏ । ଏହି ଆସନମାନ ଦକ୍ଷିଣ—ଉତ୍ତର କ୍ରମରେ ପ୍ରଥମ ନକୁଳ, ଦ୍ୱିତୀୟ ସହଦେବ, ତୃତୀୟ ଯୁଧିଷ୍ଠିର, ଚତୁର୍ଥ ଭୀମ ଓ ପଞ୍ଚମ ଅର୍ଜୁନଙ୍କର ବୋଲି ଅନୁମିତ ହୁଏ । ଏହି ଦରବାର ଦର୍ଶନକୁ ଗଲେ ଜୋତା ଉପରେ ଉପସ୍ଥାନ ମୋଜା ପିନ୍ଧି ଯିବାକୁ ହୁଏ । ମ୍ୟାବଲ ଅର୍ଦ୍ଧ ଗୁମ୍ବଜରେ କୋରାଣ ଶ୍ଳୋକମାନ ଖୋଦିତ ହୋଇ ଅଛି । ଏହା ମୁସଲମାନ୍‌ମାନଙ୍କ କୃତିତ୍ୱ । ହିନ୍ଦୁ ଧର୍ମକୁ ପରାସ୍ତ ତଥା ଲାଞ୍ଛିତ କରିବା ପାଇଁ ମୁସଲମାନ୍‌ମାନେ କଣ ବା ଚେଷ୍ଟା କରି ନଥିଲେ ? ଭାରତୀୟ ହିନ୍ଦୁ ଇତିହାସରେ ଏହା ଏକ ଦୃଷ୍ଟାନ୍ତ । କିନ୍ତୁ ଆନନ୍ଦର କଥା, ଏହି ବିଂଶ ଶତାବ୍ଦୀରେ ଏହା ଅନେକ ଦୂର ବର୍ଦ୍ଧିତ ହୋଇଅଛି । ହିନ୍ଦୁଜାତି ଆଜି ଏହି ନିର୍ମମ ଅତ୍ୟାଚାରରୁ ଅନେକ ଦୂରପର୍ଯ୍ୟନ୍ତ ରକ୍ଷାପାଇ ଅଛନ୍ତି । ଏହି ପୁରାଣ ପ୍ରସିଦ୍ଧ ଇନ୍ଦ୍ରପ୍ରସ୍ଥ ରାଜଧାନୀର ପାଦ ଧୌତ କରି ଦିନେ ଯମୁନା ନଦୀ ବହି ଯାଉଥିଲା । କିନ୍ତୁ ଆଜି ତାହା ନାହିଁ । ଇନ୍ଦ୍ରପ୍ରସ୍ଥ ଅତି

ଯମୁନାର ବହୁଦୂରରେ ଶୋଚନୀୟ ଅବସ୍ଥାରେ ପଡ଼ି ରହିଅଛି । ଏହି ଦୁରବସ୍ଥା ଦେଖି ମନେହୁଏ, ସତେ ଯେମିତି ମୁସଲମାନ ଅତ୍ୟାଚାର ଦେଖି କଷ୍ଟରେ ଯମୁନା ପୃଷ୍ଠ ଯାଉଅଛି । ପୂର୍ବେ ଯାହା ନଥି ଥିଲା ଏବେ ତାହା ଏକ ସଡ଼କ ପରି ଦିଶେ । ରାଜପ୍ରାସାଦ-ପୁରର ଅନ୍ତରମହଲ ପର୍ଯ୍ୟନ୍ତ ଏକ ସୁଡଙ୍ଗ ରାସ୍ତା (Tunnel) ଦେଇ ସ୍ରୋତସ୍ୱ ଯମୁନାକୁ ଯିବା ଆସିବା କରିବା ସଙ୍କେତ ବର୍ତ୍ତମାନ ସେଠାରେ ନଥିଲେ ହେଁ ତାହା କେତେକାଂଶ ଅଛି, ତାହ ଭାଙ୍ଗି ମାଟିତଳେ ଭର୍ତ୍ତି ହୋଇ ଗଲାଣି ।

ଏହି ସୁଡଙ୍ଗର ଅଳ୍ପଦୂରରେ 'ମାର୍କନା ଘାଟ' ପୁରୁଷମାନଙ୍କ ପାଇଁ ଅଛି । ଏହିସବୁ ପ୍ରାଚୀନ ଗୌରବ ସ୍ତୂପାବଳୀ ଦେଖୁଥିବା ସମୟରେ କହିଦ୍ୱାରରେ ଦଶ୍ମୀ-ଅଗ୍ରା ଏକ୍ସପ୍ରେସ୍ ବିଦ୍ୟୁତ ବେଗରେ ଗତି କରୁଥିବା ଦେଖିଲୁ । ଏ ସମସ୍ତ ଦେଖି ମନରେ ଏକପ୍ରକାର ଭାବ ଜାତହେଲା । କାହିଁ ଜଗଦ୍ବିଖ୍ୟାତ ପାଣ୍ଡବମାନଙ୍କ ମେଘନାଦ-ପରିଖା-ପରିବେଷ୍ଟିତ ଦୁର୍ଗ, କାହିଁ ବର୍ତ୍ତମାନ ଗୌରବ ବାଷ୍ପୀୟ ଯାନ । କାହିଁ ୫୦୦୦ ବର୍ଷ ଅତୀତ ଯୁଗ—ଅଉକାହିଁ ଏହି ବିଂଶ ଶତାବ୍ଦୀ । ମହାକାଳ ପୁରୁଷଙ୍କ ଏହି ଅବର୍ତ୍ତନ କ୍ରିୟାମଧ୍ୟରେ କେତେ ଉଦୟ ଓ କେତେ ବଲୟ ଘଟିଅଛି, ତାହାର ହିସାବ କିଏ ଦେବ ? କାଳସ୍ୟ 'କୁଟିଳା ଗତିଃ' ଏକଥା ବାରମ୍ବାର ସ୍ମରଣ ଓ ଅନୁଭବ କରିବା ବିନା ପ୍ରକୃତିଙ୍କ ଏ ସନାତନ ଦୁର୍ବାର ଲୀଳାସମ୍ବନ୍ଧେ ଅଉ କଏ କଣ କହିବ ?

ଏ ସମସ୍ତ ସ୍ତୂପାବଳୀର ମଧ୍ୟଦେଶରେ ଅଧୁନା ମହାରାଜ ପୃଥ୍ୱୀଙ୍କ ଯେଉଁପରି ଦୁର୍ଗ, ଦୁର୍ଯ୍ୟୋଧନ ମଧ୍ୟ ସେହିପରି ଦୁଷ୍ପ୍ରାପ୍ୟ,

ଯୁଧିଷ୍ଠିରଙ୍କ ଧର୍ମଭାବ ଯେଉଁପରି ଲୋପ, ଦୁର୍ଯ୍ୟୋଧନଙ୍କ ଦୁର୍ଦ୍ଦମ୍ୟ ଅଭିମାନ ଓ ଅହଂଭାବ ସେହିପରି ଅଦୃଶ୍ୟ, ତତ୍କାଳୀନ ଇନ୍ଦ୍ରପ୍ରସ୍ଥର ସର୍ବୋତ୍କୃଷ୍ଟ ସଭ୍ୟତା ଯେଉଁପରି ବିଧ୍ୱସ୍ତ, ଅମିତବଳ, ଅସୀମ ସାହ -ସିକତା ଯେଉଁପରି ଅସ୍ତମିତ, ଯଭ୍ରୁବ୍ଦଦାହ ପର ନଷ୍ଟୁ ବର୍ବରତା ଦୁର୍ବଳତା, ପରାଧୀନତା ସେହିପରି ତତ୍କାଳୀନ ଜନ-ସମାଜ ଧର ଲୋପ ହୋଇଅଛି । ଆମର କବି ଗ୍ରଧାନାଥ ଯଥାର୍ଥ କହି ଅଛନ୍ତି ।

"କେହି କହିନାହିଁ କହିବ ନାହିଁ ତ ବବରଙ୍କ ଭୂମିତଳେ
ସର୍ବେ କଳ ? ଅଗନମ୍ୟ ସାର ବାହୁଡ଼ିବେ ତାଇବଳେ" ।

ଭଗ୍ନାବଶେଷ ଦରବାର ଭବନର ପୂର୍ବ ଦିଗରେ ଅନ୍ୟ ଏକ ସ୍ତୁପ ଦେଖାଯାଏ ଅଛି । କଥିତ ହୁଏ, ଏହା ପାଣ୍ଡବମାନଙ୍କ ବୈଠକ ଭବନ ଥିଲା । କେବଳ ସ୍ତମ୍ଭ କେତୋଟିର ଭଗ୍ନାବଶେଷ ବାନା ବୈଠକ ଗୃହର ଅନ୍ୟ ଅଂଶର ଅବଶେଷ କଳନା କରିବା କଷ୍ଟ ସାଧ୍ୟ । ଏହି ସ୍ମରଣୀୟ ସ୍ତୁପର ଫୋଟ ମୁଁ ନେଇଅଛି । ଏହି ମନ୍ଦିରର କମ୍ପାଉଣ୍ଡ ଲାଲ୍ ଡ଼ାଳମ୍ୟାପଥରରେ ନିର୍ମିତ ହୋଇ ଅଛି । ଅନ୍ୟାଂଶ ମଲ୍ ମଲ୍ ପ୍ରସ୍ତରରେ ନିର୍ମିତ ।

——:o:——

## ୪—ହାବି ବୁଲା କୂପ

ଅଫଗାନ ସ୍ଥାନର ଭୂତପୂର୍ବ ଅମୀର ହାବିବୁଲ୍ଲା ଏହି କୂପ ଖନନ କରିଥିଲେ । ଅମୀର ହାବିବୁଲ୍ଲା ବର୍ତ୍ତମାନ ଶତାଉତ ରାଜା

ଅମାନୁଲଙ୍କ ପିତା ଥିଲେ । ଦ୍ୱାରକୁଷା ଯେଉଁଦିନ ଭାରତ ପରିଭ୍ରମଣ କରିବାକୁ ଆସିଥିଲେ, ସେତେବେଳେ ତାଙ୍କ ଭାରତ ଭ୍ରମଣକୁ ସ୍ମରଣୀୟ କରିବା କ୍ରମରେ ଏହି କୂପ ଖନନ କରିଥିବା ଲୋକ ମୁଖରୁ ଶୁଣାଯାଏ । ଏହି ଖନନ କାର୍ଯ୍ୟ ଖ୍ରୀ: ୧୯୦୭ ଜାନୁୟାରି ୭ ତାରିଖରେ ସମାପ୍ତ ହୋଇଥିଲା । ପୂର୍ବେ ଏଥିରେ ଜଳ ପୂର୍ଣ୍ଣ ହୋଇ ରହିଥିଲା, କିନ୍ତୁ ଆଶ୍ଚର୍ଯ୍ୟ କଥା ଏବେ ସେଥିରେ ଟୋପାଏ ମାତ୍ର ଜଳ ରହୁନାହିଁ । ଲୋକେ କହନ୍ତି, ମା' ଯମୁନାଙ୍କ 'ରୋଷ'ରୁ ଏଥିରେ ଜଳ ରହୁନାହିଁ ।

——:o:——

## ୫—ସୂର୍ଯ୍ୟ କୁଣ୍ଡ

ମସଜିଦର ଠିକ ସାମନାରେ 'ସୂର୍ଯ୍ୟକୁଣ୍ଡ' ନାମରେ ଏକ କୁଣ୍ଡ ଅଛି । ଏହାର ପରିଧି ପ୍ରାୟ ୫୦ ଫୁଟ; ଗଭୀର ୪ ଫୁଟ ହେବ । ଦୋପହରର ସ୍ନାନ ନିମିତ୍ତ ଏଠାକୁ ଏକ ବଡ଼ଏ ଉପାୟରେ ଜଳ ଅଣାଯାଏ । ଏହାର ଦକ୍ଷିଣ ଦିଗରେ 'ସୂର୍ଯ୍ୟ ମଣ୍ଡଳ' ଅବସ୍ଥିତ ।

——:o:——

## ୬—ସୂର୍ଯ୍ୟ ମଣ୍ଡଳ

ଏହାର ପ୍ରାଚୀନ ନାମ ସୂର୍ଯ୍ୟ ମଣ୍ଡଳ ଥିଲା । କିନ୍ତୁ ପରବର୍ତ୍ତୀ ମୁସଲମାନ ସମ୍ରାଟମାନେ ଏହାକୁ "ଶେର ମଣ୍ଡଳ" ନାମ ଦେଇ

ଉତ୍କଟ ସାମ୍ପ୍ରଦାୟିକତାର ସ୍ୱରୂପ ଭଣି ବଦଳ ଅଛନ୍ତି । ଏହି ଗୃହରେ ପାଣ୍ଡବମାନେ ହୋମ ଅନୁଷ୍ଠାନ କରୁଥିବା ସୂଚନା ହିନ୍ଦୁ-ହୃଦୟରେ ଜାଗରୂକ ହୁଏ । ଏହି ଗୃହଟି ଦୁଇ ମହଲ ବିଶିଷ୍ଟ ଅଟେ । ମଧ୍ୟ ମହଲରେ ହୁମାୟୁନ ନିଜର ପାଠାଗାର ରଖିଥିଲେ ଓ ସେହି ମହଲରୁ ପିଚ୍ଛା ସୋପାନ ଶ୍ରେଣୀରୁ ପଡ଼ି ଯାଇ ପ୍ରାଣବାୟୁ ଛୁଟି ଯାଇଥିଲା । ୧୫୫୬ ଖ୍ରୀଷ୍ଟାବ୍ଦରେ ହୁମାୟୁନଙ୍କ ଏହି ଅନ୍ତିମ ଘଟଣା ଇତିହାସରୁ ଜଣାଯାଏ । ଏହି ଘଟଣା ସ୍ମରଣୀୟ କରିବା ନିମନ୍ତେ ହୁମାୟୁନ ଯେଉଁ ସୋପାନରୁ ପଡ଼ି ଯାଇଥିଲେ, ତାହା ଉପରେ ପଞ୍ଚଭୂଜ ଖଣ୍ଡ ଆକାରରେ ଖୋଦିତ କଟା ଯାଇ 'ଖୁନ ପଥର' ବୋଲି ଚିହ୍ନିତ ହୋଇଅଛି ।

ତୃତୀୟ ମହଲଟି ଗୋଟିଏ ଖୋଲା ଜାଗା, ମଧ୍ୟ ଦେଶରେ ଛ'କୋଣିଆ ହୋଇ ଗୋଟିଏ ମଣ୍ଡପ ନିର୍ମିତ ହୋଇଅଛି । ମଧ୍ୟ-ସ୍ଥଳ ପାଣ୍ଡବମାନଙ୍କ 'ଯଜ୍ଞ-ସ୍ଥଳ' ବୋଲି କୁହାଯାଏ । ଏହି ସ୍ଥଳରୁ ଦକ୍ଷ ଦୃଶ୍ୟ ବଡ଼ ମନୋହର ଦିଶେ । ଏହି ଦୃଶ୍ୟ ମୁଁ ଫୋଟ ନେଇଅଛି ।

ଉପର୍ଯ୍ୟୁକ୍ତ ଦୁଇ ଗୋଟି ମହଲ ଅର୍ଥାତ 'ଦରବାର ଗୃହ' ଓ 'ସୂର୍ଯ୍ୟ ମନ୍ଦିର' ବିନା ଅନ୍ୟ କୌଣସି ପ୍ରକୋଷ୍ଠ ଏ ଦୁର୍ଗ ଅଭ୍ୟନ୍ତରରେ ନାହିଁ, ଅବଶ୍ୟ ସେ ସବୁ ମହାରାଜ ଯୁଧିଷ୍ଠିରଙ୍କ ସମୟରେ ନିଶ୍ଚୟ ଥିବ । କିନ୍ତୁ କାଳ ଗ୍ରାସରେ ପଡ଼ି ବର୍ତ୍ତମାନ ବିଲୁପ୍ତ ହୋଇଅଛି । ଅଧୁନା ଯାହା ରହି ଅଛି, ତାହା ସଦାଶୟ ସରକାରଙ୍କ ପ୍ରଗାଢ଼ ପ୍ରଯତ୍ନ ହେତୁ । ପ୍ରାଚୀନ କୀର୍ତ୍ତି ରକ୍ଷା କର

ଜ୍ଞାପକ ପ୍ରାଣ ଉଦ୍‌ବୋଧିତ କରିବା ପାଇଁ ଅମ୍ଭମାନଙ୍କ ସରକାର ଅଧିକ ପ୍ରଚେଷ୍ଟା କରିବା ସଙ୍ଗତ ଓ ଏକାନ୍ତ ଦରକାର ମନେ ହେଉଛି ।

——:o:——

## ୭—ଦ୍ରୌପଦୀ କୁଣ୍ଡ

ପାଣ୍ଡବ କାଳ ମଧ୍ୟରେ 'ଦ୍ରୌପଦୀ କୁଣ୍ଡ' ଗୋଟିଏ ଦର୍ଶନୀୟ ସ୍ଥାନ । ବହୁକାଳ ଅତିକ୍ରମ କରି ଏହି କୁଣ୍ଡ ବର୍ତ୍ତମାନ ତାହାର ଶୋଚନୀୟ ଭଗ୍ନାବଶେଷ ରୂପେ ଦଣ୍ଡାୟମାନ ହୋଇ ରହିଥିଲେ ସୁଦ୍ଧା ପ୍ରାଚୀନ ପାଣ୍ଡବ ଅବସ୍ଥିତି ସମ୍ବନ୍ଧେ ଯଥେଷ୍ଟ ଉପାଦାନ ଯୋଗାଇ ଦିଏ । ଏହା 'ସୂର୍ଯ୍ୟ ମଣ୍ଡଳ' ନିକଟରେ ଅବସ୍ଥିତ । ଆଧୁନିକ ବିଜ୍ଞାନ ସ୍ଥିତ ଯୁଗ ଭାରତର ତାଦାନ୍ତନ ବିଜ୍ଞାନ ପ୍ରଣାଳୀ ସମ୍ବନ୍ଧେ ଆଶାନୁରୂପ ଅନୁସନ୍ଧାନ କରିନାହିଁ, ତଥାପି ମୂକ ସାକ୍ଷୀ ରୂପେ ଅନେକ ଅନୁଷ୍ଠାନ, ଅଦ୍ୟାବଧି ଭାରତର ପ୍ରାଚୀନ ବିଜ୍ଞାନ—ଅଭିଜ୍ଞାନ ଧ୍ୱଜା ଧରି ରହିଅଛି । ଦ୍ରୌପଦୀ କୁଣ୍ଡ ତନ୍ମଧ୍ୟରୁ ଗୋଟିଏ । ଯେଉଁ ସୂର୍ଯ୍ୟ କୁଣ୍ଡ କଥା ପୂର୍ବରେ ଉଲ୍ଲେଖ କରି ଯାଇ-ଅଛି, ସେହି କୁଣ୍ଡ ବର୍ଣ୍ଣିତ ଦ୍ରୌପଦୀ କୁଣ୍ଡର ଦୁଇ ଶତ ହାତ ଦୂରରେ ଅବସ୍ଥିତ । ସେହି କୁଣ୍ଡରୁ ଗୋଟିଏ ଅବଶେଷିତ ନାଳ (Covered pipe line) ଆସିଅଛି । ଏହି ନଳା ପୋତା ମାଟିରେ ହୋଇଥିଲେ ସୁଦ୍ଧା ଅବିକଳ ଲୁହା ପରି ଦିଶେ, ଏହା ଗୋଲାକାର [Cylindrical], ଏହି ସ୍ଥଳରେ ପୂର୍ବେ ଗୋଟିଏ ଉଷ୍ଣ ପ୍ରସ୍ରବଣ (Hot Spring] ଥିଲା । ଏବେ ତାହା ଶୁଷ

ହୋଇଯାଇଅଛି । ଉଷ୍ଣକୁଣ୍ଡର ତପ୍ତଜଳ ଓ ସୂର୍ଯ୍ୟକୁଣ୍ଡର ଶୀତଳ ଯମୁନାଜଳ ଏକକ ଗୋଷ୍ଠୀ ପ୍ରଣାଳୀ ଦେଇ ଶେଷ କୋଠରୀରେ ମିଶ୍ରିତ ହୁଏ । କଥିତ ହୁଏ, ଦ୍ରୌପଦୀ ସେହି କୋଠରୀରେ ନିର୍ମିତ ଏକ କୁଣ୍ଡରେ ସେହି ମିଶ୍ରିତ ଜଳ ସ୍ନାନ କରନ୍ତି । ଏହି କୁଣ୍ଡ ୫ ଫୁଟ ଲମ୍ବ, ୩ ଫୁଟ ଓସାର ଓ ୨ ଫୁଟ ଗଭୀର । ଏହି ସ୍ନାନ ମଣ୍ଡପ ଅତି ନବାଞ୍ଚନ ସ୍ଥଳରେ ବିଦ୍ୟମାନ, ରାଣୀହଂସପୁର ସ୍ତ୍ରୀମାନଙ୍କ ପାଇଁ ଉପଯୁକ୍ତ । ସ୍ନାନ କୁଣ୍ଡଟି ଚୂନରେ ଛପଡ଼ ହୋଇଅଛି । ଏଥିରୁ ଜଣାଯାଏ, ମହାଭାରତ ଯୁଗରେ ଚୂନର ବ୍ୟବହାର ମଧ୍ୟ ଥିଲା । ଏହା ଏତେ ଦୃଢ଼ ଯେ ୫୦୦୦ ବର୍ଷ ଅତିକ୍ରମ କରି ମଧ୍ୟ ଏହା ଭଣ୍ଟି ରହିଅଛି । ଏହି କୁଣ୍ଡ ଦେଖିଲେ ଆଧୁନିକ 'Hot & cold bath' ଯାହା ମନେ ପଡ଼େ । ପୂର୍ବ କାଳରେ ମଧ୍ୟ ଏହି ଢଙ୍ଗର ସ୍ନାନ ଲୋକେ ବ୍ୟବହାର କରୁଥିଲେ ।

———:o:———

## ୮ ଦୁର୍ଗରୁ ଜଳ ବାହାର କରିବା ରାସ୍ତା

ପାଣ୍ଡବ ଦରବାରର ଦକ୍ଷିଣ ଦିଗରେ ଏକ ବୃହତ୍ ନାଳ ଦେଖାଯାଏ । ଏହାଟି ଏକ ଉଚ୍ଚ ଭାଗରେ ଅବସ୍ଥିତ ଥିବା ଯୋଗୁଁ ସମୁଦାୟ ଜଳ ଏହା ଦ୍ୱାରା ଯମୁନାରେ ମିଶିଯାଏ । ପ୍ରାଚୀନ Drainage Systemର ଏହା ଏକ ନିଦର୍ଶନ ।



## ପାଣ୍ଡବ କିଲ୍ଲା ବା ଇନ୍ଦ୍ରପ୍ରସ୍ଥର ସ୍ଥୂଳ ବିବରଣ

:o:

'ପାଣ୍ଡବ କିଲ୍ଲା' ବିବରଣୀ ଆରମ୍ଭ କରିବା ପୂର୍ବରୁ ଏହି କିଲ୍ଲାର ସବିଶେଷ ଆଭାସ ଦେବା ଆବଶ୍ୟକ ବୋଧହୁଏ । ଏହି କିଲ୍ଲା ଖ୍ରୀଃ ପୂଃ ୧୪୫୦ ଅବ୍ଦରେ ନିର୍ମିତ ହୋଇଥିଲା । ଭାରତୀୟ ସଭ୍ୟତାର ଚୂଡ଼ାନ୍ତ ନିଦର୍ଶନ ସ୍ୱରୂପ ଯେଉଁ ଯେଉଁ କୀର୍ତ୍ତି ମହାକାଳ ମୁଖରୁ ରକ୍ଷା ପାଇ ଆଜି ସୁଦ୍ଧା ଦେଦୀପ୍ୟମାନ, ସେମାନଙ୍କ ମଧ୍ୟରୁ ପାଣ୍ଡବ କିଲ୍ଲା ଅନ୍ୟତମ । ହିନ୍ଦୁ ଦୃଷ୍ଟିରେ ବାହୁଁକି, ବିଶ୍ୱ-ମଣ୍ଡଳର ନିରପେକ୍ଷ ବିଚାରକ ଦୃଷ୍ଟିରେ ଏହି କିଲ୍ଲା ମହା ପବିତ୍ରମୟ ତୀର୍ଥ ଭୂମି କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ଥୂଳ ବା ସାଧାରଣ ଦୃଷ୍ଟିରେ ଏହା ପ୍ରସ୍ତର ନିର୍ମିତ ଏକ ପ୍ରାସାଦର ଭଗ୍ନାବଶେଷ ରୂପେ ଗଣ୍ୟ ହୋଇପାରେ କିନ୍ତୁ ଭବ-ଦ୍ରଷ୍ଟା ଜ୍ଞାତ ମନୀଷୀଙ୍କର ଏହା ଯେ କେତେ ପବିତ୍ର ପଦାର୍ଥ, ତାହା କେବଳ ଅନୁଭୂତିର କଥା । ମହାଭାରତ ବର୍ଣ୍ଣିତ ସମସ୍ତ ଚରିତ୍ର (character) ବର୍ଣ୍ଣନା ବିଶ୍ଳେଷଣ କରିବାହିଁ ଇନ୍ଦ୍ରପ୍ରସ୍ଥ ବା 'ପାଣ୍ଡବ କିଲ୍ଲାର' ଉପଯୁକ୍ତ ବର୍ଣ୍ଣନା ପଥ ବୋଧହୁଏ । ମହାଭାରତ ଯୁଗର ବୃହତ୍ତର ପରିସର ଓ ବ୍ୟାପକ ମନୋବୃତ୍ତି ମଧ୍ୟରେ ଯେଉଁ ଦୁର୍ଗ କେନ୍ଦ୍ରୀକ ଶକ୍ତି-ରୂପେ ଭାରତୀୟ ଜାତି ନିୟନ୍ତ୍ରଣ କରୁ ରହିଥିଲା, ତାହାର ବର୍ଣ୍ଣନା କରିବା ପାଇଁ ମୋର କ୍ଷୀଣ ଲେଖନୀ ଅକ୍ଷମ । ଯଦି ଇନ୍ଦ୍ରପ୍ରସ୍ଥର ବର୍ଣ୍ଣନା କେହି ଶୁଣିବା ଇଚ୍ଛା କରନ୍ତି, ତେବେ "ସମଗ୍ର ମହାଭାରତ ପାଠ କରନ୍ତୁ" । ଏହା ବିନା ଏହି ମହାକୀର୍ତ୍ତିଶାଳୀ ନଗରୀର ବର୍ଣ୍ଣନା ଅସମ୍ଭବ ।

INDRAPRASTA OR PANDAB KILLA



ଇନ୍ଦ୍ରପ୍ରସ୍ଥ ବା ପାଣ୍ଡବକେଲ୍ଲା। ( ପୃ ୨୨ ଷ୍ଠା )

ଇନ୍ଦ୍ରପ୍ରସ୍ଥ ନଗରୀ ପାଣ୍ଡବ ରାଜତ୍ୱରେ ନିର୍ମିତ ହୋଇଥିଲା । ପରେ ଖ୍ରୀ ୧୫୪୦ ରେ ମୋଗଲ ସମ୍ରାଟ ହୁମାୟୁନ ଏହାର ଜୀର୍ଣ୍ଣ ସଂସ୍କାର କରିଥିଲେ । ଏହି ଦୁର୍ଗର ପ୍ରାଚୀର ଚୂନ, ମାଟି ଓ ପଥରରେ ନିର୍ମିତ ହୋଇଅଛି । ଏହାର ପରିଧି ଏକ ମାଇଲ ପର୍ଯ୍ୟନ୍ତ ବିସ୍ତୃତ । ଏହା ପୂର୍ବେ ଯମୁନା ନଦୀ କୂଳରେ ଅବସ୍ଥିତ ଥିଲା, କିନ୍ତୁ ବର୍ତ୍ତମାନ ଯମୁନା ଦେଢ଼ ମାଇଲ ଦୂର ଘୁଞ୍ଚି ଯାଇଅଛି । ଦୁର୍ଗର ପୂର୍ବ ଦିଗରେ ଯମୁନା ଓ ଅନ୍ୟ ତିନି ଦିଗରେ ଜଳ ଘେର ରହିଥିଲା । ଦୁର୍ଗ ସଂରକ୍ଷଣ କରିବା ପାଇଁ ଏହି ନୀତି ଯୁଗ ଯୁଗ ଧରି ଅନୁସୃତ ହୋଇ ଆସୁଅଛି । ପୂର୍ବ ଦିଗରେ ଯମୁନା ନଦୀ ଥିବାରୁ ଏହି ଦିଗରେ 'ଦ୍ୱାର' ନଥିଲା । କିନ୍ତୁ ପଶ୍ଚିମ, ଦକ୍ଷିଣ ଓ ଉତ୍ତର ତିନିଦିଗରେ ତିନିଗୋଟି ଦ୍ୱାର ଅଛି । ପଶ୍ଚିମ ଦ୍ୱାରଦେଇ ଦର୍ଶକମାନେ ଯାତାୟାତ କରନ୍ତି । ଦୁର୍ଗ ପ୍ରାଚୀର ପାଣ୍ଡବ ରାଜତ୍ୱରେ ନିର୍ମିତ ହୋଇଥିଲେ ସୁଦ୍ଧା ଦ୍ୱାରମାନ ପଥରରେ ମୋଗଲ ସମ୍ରାଟଙ୍କ ଦ୍ୱାରା ପୁନଃ ନିର୍ମାଣ କରାଯାଇଅଛି । ଦ୍ୱାରଦେଇ ଯିବାପାଇଁ 'ଘୋଷରା' ଅଛି । ପ୍ରତ୍ୟେକ ଦ୍ୱାର ଉପରେ ମୁସଲମାନ ଢଙ୍ଗର ମିନାରଟେ ସ୍ତମ୍ଭ—ପ୍ରାସାଦ ଅଛି । ତାହା ସବୁ ନୀଳ ମିନାକାମ (Mosaic-Work) ହୋଇଥିଲା । ତନ୍ମଧ୍ୟରୁ କେତେ ଭାଙ୍ଗିଗଲାଣି ।

ଏହି ଦୁର୍ଗର ପ୍ରାଚୀର ଦୁଇ ମହଲ ବିଶିଷ୍ଟ । ଉପର ମହଲରେ ପଦାତି ରହନ୍ତି ଓ ତଳ ମହଲରେ ଘୋଡ଼ା ହାତୀ ରହନ୍ତି । ଶୁଣିଲୁ, ପୂର୍ବେ ତଳମହଲ ନିମ୍ନରେ ଆଉ ଏକ ମହଲ ଅଛି । ଏହି ମହଲ କିନ୍ତୁ ମାଟି ପଥରରେ ପୂର୍ଣ୍ଣହୋଇ ଲୋକ ଅଗମ୍ୟ ହୋଇଅଛି । ଚତୁର୍ଦ୍ଦିଗରେ ଏହିପରି ତ୍ରିତଳଯୁକ୍ତ ପରିବେଷ୍ଟିତ ହୋଇ ମଧ୍ୟଦେଶରେ ରାଜପ୍ରାସାଦ ଥିଲା । ସେଥିର ଅଂଶିକ

ଅବଶେଷ ରୂପେ 'ଦରବାର ଭବନ' ଓ 'ସୂର୍ଯ୍ୟମଣ୍ଡଳ' ଓ ଅନ୍ୟାନ୍ୟ ଉପବେଶନ ସ୍ଥାନମାନ ରହିଅଛି । ଏହି ପ୍ରାସାଦ ଅଭ୍ୟନ୍ତରରେ ସୁରକ୍ଷିତ ଘାସ ମଇଦାନ ଅଛି । ପ୍ରାୟ ୬୫ବର୍ଷ ତଳେ ଏହି ଦୁର୍ଗ ଅଭ୍ୟନ୍ତରରେ ବୃଟିଶର କେତେଜଣ ରାଜପୁତ୍ ଥିଲେ । ବର୍ତ୍ତମାନ ସେମାନେ ଭାରତ ସରକାରଙ୍କ ଦ୍ୱାରା ରକ୍ଷିତ ହୋଇ ଅଛନ୍ତି । ପ୍ରାଚୀନ କୀର୍ତ୍ତି ସଂରକ୍ଷଣ ଆଇନ [Ancient Manument Preservation Act Vii 1904] ଦ୍ୱାରା ସେମାନେ ଏହି ରୂପରୁ ରକ୍ଷିତ ହୋଇ ଅଛନ୍ତି ।

ଏହି ଆଇନ ଦଫା ଅନୁଯାୟୀ ଭାରତୀୟ କୀର୍ତ୍ତିସମୂହ ରକ୍ଷିତ ହୋଇ ଥାଏଅଛି । ଯେଉଁ ବ୍ୟକ୍ତି ଏହି ଆଇନ ଅମାନ୍ୟ କରିବ, ସେ ତିନମାସ ଜେଲ ଓ ୫୦୦୦ଟଙ୍କା ଜରିମାନା ପର୍ଯ୍ୟନ୍ତ ଦଣ୍ଡିତ ହେବ । ଘାସ ମଇଦାନ ଅତି ସୁନ୍ଦରଭାବେ ରକ୍ଷିତ ହୋଇଅଛି, ପାଇପ୍ ଯୋଗେ ନିତ୍ୟ ଜଳ ସେଚନର ବ୍ୟବସ୍ଥାରୁ ଏହା ପ୍ରଚଣ୍ଡ ଗ୍ରୀଷ୍ମକାଳରେ ମଧ୍ୟ ଶ୍ୟାମାୟମାନ ଉପଚ୍ୟକା ପରି ଦିଶେ । ବିଦେଶୀୟ ସରକାର ପ୍ରାଚୀନ କୀର୍ତ୍ତିମାନଙ୍କ ମହତ୍ତ୍ୱ ରକ୍ଷଣ ଏହି ପ୍ରକାର କରୁ ନଥିଲେ ସେ ସମସ୍ତ ଅଦ୍ଭୁତ ବିକଳାଙ୍ଗ ହୋଇ ପଡିଥାନ୍ତା । ହିନ୍ଦୁମାନେ ବଡ ଧର୍ମଭୀରୁ; ସୁତରାଂ ଧର୍ମପାଇଁ ସେମାନେ ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିଥିଲେ । ମୁସଲମାନ ସମ୍ରାଟମାନେ ହିନ୍ଦୁମାନଙ୍କ ଧର୍ମପ୍ରତି ଘାତିକ ପ୍ରକାଶ କରି ନିଜ ଧର୍ମରେ ଦୀକ୍ଷିତ କରିବା ସକାଶେ ଯୁଦ୍ଧ ବିଗ୍ରହାଦି ପର୍ଯ୍ୟନ୍ତ ଆରମ୍ଭ କଲେ । ଆତ୍ମରକ୍ଷା, ଧର୍ମରକ୍ଷା ପାଇଁ ହିନ୍ଦୁଜାତି ଯୁଦ୍ଧ କ୍ଷେତ୍ରକୁ ସ୍ୱର୍ଗପ୍ରାପ୍ତି ମଣି ଯେଉଁ ଅସୀମ

ଖାରହି ଦେଖାଇଛନ୍ତି । ଐତିହାସିକମାନେ ସେ ସମସ୍ତ ଘଟଣା ବିଶେଷ ରୂପେ ଜାଣନ୍ତି, ବାଧ୍ୟତାମୂଳକ ସୂତ୍ରରେ ଦେଶ ଜୟ କରିବା, ନିଜ ଧର୍ମ ପ୍ରଚାର କରିବା ମୁସଲମାନ ସମ୍ରାଟଙ୍କ ନୀତିଥିଲା । ଏହି ଉଚ୍ଚ ନୀତିହେତୁ ହିନ୍ଦୁମାନେ ମୁସଲମାନ ରାଜଜାତିରୁ ପୃଥକ ରହିଥିଲେ । ଅନ୍ୟଥା ସେମାନେ ଜାତି—ଧର୍ମ—ନିର୍ବିଶେଷରେ ସମ୍ରାଟଙ୍କୁ ସମ୍ମାନ ପ୍ରଦର୍ଶନ କରି ଆସୁଅଛନ୍ତି ।

ମୁସଲମାନ ରାଜଜାତି ଓ ବ୍ରିଟିଶ ରାଜଜାତି ମଧ୍ୟରେ ଯେଉଁ ପ୍ରଧାନ ପାର୍ଥକ୍ୟ ରହିଅଛି, ତାହା ଦ୍ୱାରା ମୁସଲମାନ ଶାସିତ ହିନ୍ଦୁଜାତି ବିରକ୍ତ ଓ ପ୍ରତିହିଂସା ପରାୟଣ ଥିଲା । କିନ୍ତୁ ବର୍ତ୍ତମାନ ବ୍ରିଟିଶ ରାଜତ୍ୱରେ ସେ ସନ୍ତୁଷ୍ଟ ଓ ଅନୁରକ୍ତ ହୋଇ ଅଛି । ପ୍ରାଚୀନ କୀର୍ତ୍ତିରାଜି ରକ୍ଷା କରିବାଠାରୁ ଆରମ୍ଭକରି ହିନ୍ଦୁ ଧର୍ମର ଅବରୋଧୀ ନୀତି ପାଳନ କରିବା ପର୍ଯ୍ୟନ୍ତ ବ୍ରିଟିଶ ରାଜପୁରୁଷ-ମାନେ ଧାସ୍ୱବାହକ ରୂପେ ଘୋଷଣାକରି ଆସୁଅଛନ୍ତି । ହିନ୍ଦୁ ସାମାଜିକ ରୀତି ବ୍ୟବସ୍ଥା ବିଧାନରେ ବ୍ରିଟିଶ ସରକାର ହିନ୍ଦୁଜଗତର ପ୍ରିୟପାତ୍ର ଓ ଧନ୍ୟବାଦାର୍ହ ହୋଇଥିବା ଅନେକ ଘଟଣାରୁ ସ୍ପଷ୍ଟ ହୋଇଅଛି । ପ୍ରାଚୀନକାଳରେ ମୁସଲମାନ ସମ୍ରାଟମାନେ ଏହି ଗମ୍ଭୀର ସୁନୀତି ପାଳନ ନକରିବାରୁ ଯେଉଁଦଶା ଭୋଗିଛନ୍ତି, ତାହା ତାଙ୍କ ସାମ୍ରାଜ୍ୟ ଅଧୋପତନ ତଥା [illegible]ରୁ ବୁଝାଯାଏ ।



# ହୁମାୟୁନ ଟୁମ୍ବ

ଇନ୍ଦ୍ରପ୍ରସ୍ଥ ଦୁର୍ଗଠାରୁ ଏହା ଏକ ମାଇଲ ଦୂରରେ ଅବସ୍ଥିତ । ଏହି କବରଟି ହୁମାୟୁନଙ୍କ ସ୍ତ୍ରୀ ଅରବୀ ହାମୀଦା ବେଗମ୍ [ଆକବରଙ୍କ ମାତା]ଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।

ଏହି ଟୁମ୍ବ ଏପରି ସୁଗଠିତ ଯେ, ଏହା ନିର୍ମାଣ ହେବା ପାଇଁ ଷୋହଳ ବର୍ଷ କାଳ ଲାଗିଥିଲା ଓ ୧୫ ଲକ୍ଷ ଟଙ୍କା ବ୍ୟୟ ହୋଇଥିଲା । ଖ୍ରୀ ୧୫୬୫ ରେ ଏହାର ନିର୍ମାଣ ଶେଷ ହୋଇଥିଲା ।

ଏହି ଟୁମ୍ବ ଭିତରକୁ ଯିବାକୁ ହେଲେ ବାମ ପଟରେ ଅବସ୍ଥିତ ଏକ ଦରଜା ବା ଦ୍ୱାର ଦେଇ ଯିବାକୁ ହୁଏ । କଥିତ ହୁଏ, ଏହି ଦ୍ୱାର ଭିତରେ ଅସଂଖ୍ୟ ପ୍ରକୋଷ୍ଠ ଥିଲା । ସେହି ପ୍ରକୋଷ୍ଠମାନଙ୍କରେ ହମୀଦା ବେଗମ୍ ଓ ଅରବ ଦେଶରୁ ତାଙ୍କ ସହିତ ଆସିଥିବା ଦାସୀମାନେ ବାସ କରୁଥିଲେ । ପ୍ରାୟ ତିନିଶତ ପରଗୃହକା ଏହି ପ୍ରକୋଷ୍ଠରେ ସ୍ୱଚ୍ଛନ୍ଦ ବିହାର କରୁଥିଲେ । ହୁମାୟୁନ କିନ୍ତୁ ଏହି ପ୍ରାସାଦରେ ଅବସ୍ଥାନ କରୁନଥିଲେ । ତାଙ୍କ ପାଇଁ ପୁରୁଣା କିଲ୍ଲା ବା ଇନ୍ଦ୍ରପ୍ରସ୍ଥ ନିର୍ଦ୍ଦିଷ୍ଟ ଥିଲା । ଅଧୁନା ଏହି ଗୃହର କୌଣସି ଚିହ୍ନ ନାହିଁ । ସବୁକାଳ ଗର୍ଭରେ ବିଲୀନ ହୋଇଅଛି । ମାତ୍ର ହୁମାୟୁନଙ୍କ ପ୍ରିୟ ଟୁମ୍ବଟି ଆଜ ଯୁଦ୍ଧା ତଦାନିନ୍ତନ ସ୍ମୃତି ବହନ କରି ଅଦ୍ୟାପି ଦର୍ଶକମାନଙ୍କ ପ୍ରିୟ ଦର୍ଶନ ହୋଇ ରହିଅଛି । ଟୁମ୍ବର ଆକାର ଓ ସଂଗଠନ ପ୍ରଣାଳୀ ଦୃଷ୍ଟିରେ ଏହା 'ତାଜ ମହଲ'ର ଦ୍ୱିତୀୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାର ଡୋମ ବା ଉପର ଭାଗ ହିନ୍ଦ ମର୍ମର

ପଥରରେ ନିର୍ମାଣ ହୋଇଅଛି । ତଳ ଭାଗ ଲାଲ ଡ଼ାଳମ୍ୱା ପଥର ଓ ମର୍ମର ପଥର ସମାବେଶରେ ନିର୍ମାଣ ହୋଇଅଛି । ନିମ୍ନ ଓ ଉପର-ଭାଗମାନଙ୍କରେ ଏହି ଟୋମ୍ବର ସମୁଦାୟ ୧୭୫ ଗୋଟି କବର ଅଛି । ସେଥିରୁ କେତେକଙ୍କ ନାମ ଜଣା ପଡ଼େ ନାହିଁ । କିନ୍ତୁ ବଶିଷ୍ଟ କେତେକ ମୃତ ବାଦଶାହାମାନଙ୍କ କବର ସୁସ୍ପଷ୍ଟ ଜଣାପଡ଼େ । ତାର ଶିରୋ ଅଜାମ ସାହା, ଜାହାନର ସାହା, ଫରୁଖ ସାହା, ରଫୁଲ ଜରଜାହ, ରଫିଉ ଦୋଲା ପ୍ରଭୃତିଙ୍କ କବର ତନ୍ମଧ୍ୟ ଲୋକେ ଚିହ୍ନି ପାରନ୍ତି । ଏମାନେ ସମସ୍ତେ କ୍ରମାନ୍ୱୟରେ ବାଦଶାହ ଥିଲେ । ଏଥିରେ କବର ଛଡ଼ା, ଜଣେ ଭଣ୍ଡାର ଫାଇମ ଖାଁ, ଜଣେ ମହାଜନ ନଲବୁଜ ଏହି ଦୁଇ ଜଣଙ୍କ କବର ଚିହ୍ନା ପଡ଼େ । ନଲବୁଜ ତଦାନିନ୍ତନ ରାଜ ଦର୍ବାରର ମହାଜନ (court jeweller) ଥିଲେ । ଦ୍ୱିତୀୟ ଟୋମ୍ବର ଉପର ଭାଗ ନୀଳ ମିନା କାମ (Mosaic work)ରେ ମଣ୍ଡିତ ହୋଇ ବଡ଼ ସୁନ୍ଦର ଦେଖାଯାଏ ।

ବର୍ତ୍ତମାନ ଏହି ଟୋମ୍ବର ଅଭ୍ୟନ୍ତରର ସବିଶେଷ ବର୍ଣ୍ଣନ କରା ଯାଉ । ଏହା ପାଞ୍ଚ ଭାଗରେ ବିଭକ୍ତ ହୋଇଅଛି । ଗୃହ ପାଖ ଗୃହରେ 'ହାଜ' ବା ହାମିଦା ଅରବା ବେଗମ୍ ଓ ତାଙ୍କ ଭଉଣୀଙ୍କ କବର ଏହି ପ୍ରକୋଷ୍ଠର ଗୋଟିକରେ ଅଛି । ଅନ୍ୟ ଗୁଡ଼ିକରେ ଅନ୍ୟାନ୍ୟ ବାଦସାହଙ୍କ କବର ବିଦ୍ୟମାନ ଅଛି । ସମସ୍ତ କବର ମର୍ମର ପଥରରେ ନିର୍ମିତ ହୋଇଅଛି । ପ୍ରତ୍ୟେକ କବର ପାର୍ଶ୍ୱରେ ଗୋଟିଏ ଗୋଟିଏ ଛୋଟ ଛୋଟ କୋଠରୀ ଅଛି । ପୂର୍ବେ ଯେଉଁ ଲୋକକୁ କବର ଦିଆଯାଏ, ଏହି ଅତିରିକ୍ତ କୋଠରୀରେ ୪୦ ଦିନ ବ୍ୟାପୀ କୋରାଣ ପାରାୟଣ କରାଯାଏ । ଏହି କୋଠରୀମାନଙ୍କର ଚତୁର୍ଦ୍ଦିଗରେ ଗୃହଗୋଟି ପାବଚ୍ଛ ଲେଖାଏ

ଅଛି । ଉପରରେ ଏକ ମସ୍ତ ଖୋଲା ବାରନ୍ଦା ଗୃହ ପାଖରେ ଅଛି । ସେହି ବାରନ୍ଦାର ପଶ୍ଚିମ ଉତ୍ତର କୋଣରେ ଟୋମ୍ବ ନିର୍ମାତା ପାଞ୍ଚଜଣ କାରିଗରଙ୍କ ମଧ୍ୟ କବର ଅଛି । ଏହା ସମୀପରେ ଆରଙ୍ଗଜେବଙ୍କ ପୁତ୍ର "ଦ୍ବାର"ଙ୍କ କବର ମଧ ଅଛି । ପଶ୍ଚିମ ସୋପାନ ଦେଇ ଗଲାବେଳେ, ପଶ୍ଚିମ—ଉତ୍ତର କୋଣରେ ଗୋଟିଏ ଛୋଟ କୋଠରି ଦର୍ଶକ-ମାନେ ଦେଖନ୍ତି । ଏହି କୋଠରିର ଇତିବୃତ୍ତ ଭାରତୀୟ ଏକ ବିଶିଷ୍ଟ ଐତିହାସିକ ଘଟଣାର କେନ୍ଦ୍ରରୂପେ ଅଜି ମନଶ୍ଚକ୍ଷୁରେ ପ୍ରତିଭାତ ହୁଏ ।

ମୋଗଲ ସାମ୍ରାଜ୍ୟର ଶେଷ ସ୍ୱାଧୀନ ଚକ୍ରବର୍ତ୍ତୀଙ୍କ ଖ୍ରୀ ୧୮୫୭ରେ ମେଜର୍ ହାଡ୍‌ସନ [Major Hadson] ଯେତେବେଳେ ଆକ୍ରମଣ କରିବା ଉଦ୍ୟମ କଲେ, ସେତେବେଳେ ସେ ଅନନ୍ୟୋପାୟ ହୋଇ ଇନ୍ଦ୍ରପ୍ରସ୍ଥ କିଲ୍ଲାରୁ ଆସି ଏହି ଟୋମ୍ବ—କୋଠରିରେ ତାହାଙ୍କର ତିନି ଗୋଟି ସନ୍ତାନ ଓ ବେଗମ୍‌ଙ୍କ ସହିତ ଲୁକ୍କାୟିତ ଭାବେ ଆଶ୍ରୟ ନେଇ ଥିଲେ । ମେଜର୍ ନାନା ସ୍ଥାନ ଅନୁସନ୍ଧାନ କରି ସୁଦ୍ଧା ମୋଗଲ ସମ୍ରାଟଙ୍କ ଲେଶମାତ୍ର ସନ୍ଧାନ ପାଇ ନପାରି, ହତାଶ ହୋଇ ଅଛନ୍ତି । ଏହିପରି ସଙ୍କଟ ସମୟରେ ସମ୍ରାଟଙ୍କ ଅନ୍ୟ ଏକ ବେଗମ୍ ନିଜ ସ୍ୱାମୀ ହୁମାୟୁନ ଟୋମ୍ବରେ ଆତ୍ମଗୋପନ କରିଥିବା ସମ୍ବାଦ ମେଜର ହାଡ୍‌ସନ୍‌ଙ୍କୁ କାଶ୍ମୀରଦ୍ୱାର [Kashmeare Gate] ପାଖରେ ଜଣାଇ ଦେଲେ । ଉପର୍ଯ୍ୟୁପରି [illegible] ପାତ ହେତୁକରି, ଯେଉଁପରି ବୃକ୍ଷ ମୃତପ୍ରାୟ ଅବସ୍ଥାରେ ଥାଏ, କିନ୍ତୁ ଅତର୍କିତ ଭାବରେ ଜଳଧାର ପାଇ ଉଜ୍ଜୀବିତ ହୋଇ ଉଠେ ସେହିପରି ମେଜର ସାହେବ ବେଗମ୍‌ଙ୍କ ଏହି ସମ୍ବାଦ ପ୍ରାପ୍ତିରେ ପୁନର୍ବାର ଉତ୍ସାହିତ ହୋଇ ସେହି ଟୋମ୍ବ

ଅକ୍ରମଣ କଲେ । ସଙ୍ଗରେ ଅସଂଖ୍ୟ ଫୌଜଥିଲେ କଣ ହେବ, ଦୃଢ଼ଦ୍ୱାର ଅମୋଘ—ଅର୍ଗଳରୂପେ ସାହେବଙ୍କ ଗତରୋଧ କଲା । ଫୌଜର ସଞ୍ଚିତ ଶକ୍ତି ଏକାଧାରରେ ଉଦ୍ଦାମସ୍ରୋତ ପରି ସେହି ଦ୍ୱାର ଉପରେ ପଡଲେ ମଧ୍ୟ ଦ୍ୱାର ଆଉ ଟଳିଲା ନାହିଁ । ସାହେବ ଦ୍ୱାରଦେଇ ଦୁର୍ଗ ପ୍ରବେଶ କରିବା ଆଶା ତ୍ୟାଗକଲେ ସତ, କିନ୍ତୁ ହତାଶ ନହୋଇ ଅନ୍ୟଏକ ପଥର ଜାଲିବାଡ଼ ଭାଙ୍ଗି ଦୁର୍ଗ ଭିତରେ ପ୍ରବେଶ କଲେ । ଇତି ମଧ୍ୟରେ ମୋଗଲ ସମ୍ରାଟଙ୍କ ଦୁଇପୁଅ ହଠାତ୍ ଅନ୍ୟପାଖର ଦ୍ୱାର ଉନ୍ମୁକ୍ତକରି, ହାଡ଼ସନଙ୍କ ଗୃହରେ ପ୍ରବେଶକରି, ତାଙ୍କ ପରିବାରର ସମସ୍ତଙ୍କୁ ହତ୍ୟାକଲେ । ଏଣେ ମୋଗଲ ସମ୍ରାଟ ବେଗମ ଓ ସେମାନଙ୍କ କନିଷ୍ଠ ପୁଅ ଗ୍ରେପ୍ତାର ହୋଇ ହାଡ଼ସନ୍ଙ୍କ କବଳଗତ ହେଲେ । ଗିରଫ ହେବା ପୂର୍ବରୁ ମେଜର ଯେତେବେଳେ ବାହାଦୁର ଶାହା (ସମ୍ରାଟ)ଙ୍କ ହସ୍ତରୁ ଖଡ୍ଗ ଛଡ଼ାଇବାକୁ ଯାନ୍ତି, ସେତେବେଳେ ବାଦଶାହା ଅନନ୍ୟୋପାୟ ହୋଇ ଅଶ୍ରୁପୂର୍ଣ୍ଣ ନୟନରେ ଆତ୍ମ—ସମର୍ପଣ କଲେ । ତାଙ୍କ ଭାରତ—ପ୍ରୀତି ସେହି ସମୟରେ ତାଙ୍କ ଉଚ୍ଛ୍ୱସିତ କଣ୍ଠରେ ପ୍ରକାଶ ପାଇଥିଲା । ସେ ସ୍ମରଣୀୟ ଭାଷାରେ କହିଥିଲେ:—

"ଦମ୍ ଦମେମେ ଦମ୍ ନାହିଁ ଖୈରମାଙ୍ଗେ ଜାନ୍ କୀ,
ଐ ଜଫର ଅବଶମଶେର ଅଗୀ ହୋଚୁକୀ ହିନ୍ଦୁସ୍ଥାନ କୀ"

ଏହାର ଅର୍ଥ—"ଆମ୍ଭର ଭାରତବର୍ଷର ପତନ ଆରମ୍ଭ ହେଲା" । ଏତିକି କହି ସେ ଆତ୍ମ—ସମର୍ପଣ କଲେ ।

ଏହାଙ୍କୁ ଗ୍ରେପ୍ତାର କରି ମେଜର ହାଡ଼ସେନ ସଫଳ ମନୋରଥ ହେଲେ । କିନ୍ତୁ ପର ମୁହୂର୍ତ୍ତରେ ସ୍ୱଗୃହକୁ ଯାଇ ଦେଖନ୍ତି, ତାଙ୍କ

ପରିବାରବର୍ଗ ସମ୍ରାଟଙ୍କର କ୍ରୁର ପିଶାଚ ରୂପୀ ପୁତ୍ରମାନଙ୍କ ଦ୍ୱାରା ଶୋଚନୀୟ ଭାବରେ ବିନଷ୍ଟ ହୋଇଅଛନ୍ତି । ମେଜର ସାହେବ ଏହି ଲୋମହର୍ଷଣ ବ୍ୟାପାର ଦେଖି କେବଳ ବାଦଶାହଙ୍କ ଗ୍ରେପ୍ତାରିରେ ସନ୍ତୁଷ୍ଟ ନହୋଇ ପ୍ରବଳ ପ୍ରତିହିଂସା ସାଧନ ପାଇଁ ତାଙ୍କର ସେହି ପୁତ୍ରମାନଙ୍କୁ ଗିରଫ କଲେ ଓ ସେମାନଙ୍କୁ ଗୁଳି କରି କଣ୍ଠିତ ଅଶ୍ୱାସନା ଲାଭ କଲେ । ଅଜ କାଲି ଦିଲ୍ଲୀର ଯେଉଁ ଦ୍ୱାର 'ଖୁନଦ୍ୱାର' ନାମରେ ଅଭିହିତ ହେଉଅଛି, ସେହି ଦ୍ୱାରରେ ଏହି ସମ୍ରାଟ ପୁତ୍ରମାନଙ୍କର ଛିନ୍ନ ମସ୍ତକ ତିନି ଦିନ ପର୍ଯ୍ୟନ୍ତ ମେଜର ସାହେବ ଲଟକାଇ ରଖିଥିଲେ । ବାହାଦୁର ଶାହା ଏହି ଲୋମହର୍ଷଣ ଘଟଣା ପରେ ବର୍ମାକୁ ନୀତ ହୋଇଥିଲେ । ତାଙ୍କର ଜଣେ ନାତି ଏବେ ଜୀବିତ ଅଛନ୍ତି । ସରକାର ତାଙ୍କୁ ପେନସନ ଦେଇ ରଖିଛନ୍ତି । ଭାରତ ପଦାର୍ପଣ କରିବା ପାଇଁ ସରକାରୀ ନିଷେଧାଜ୍ଞା ଅଛି । ଏହି ଘଟଣା ଭାରତୀୟ ଇତିବୃତ୍ତରେ ଏକ ବିଶିଷ୍ଟ ସ୍ଥାନ ପାଇଅଛି । ଶାସ୍ତ୍ରକାରମାନେ ସ୍ତ୍ରୀ-ଜାତିକୁ ବିଶ୍ୱାସ ନକରିବା ପାଇଁ ଯେଉଁ ଉପଦେଶ ଦେଇ ଅଛନ୍ତି, ତାହାର ସତ୍ୟତା ଏହି ଘଟଣାର ମୂଳରେ ବିଦ୍ୟମାନ । ବାହାଦୁର ଶାହାଙ୍କ ଅନ୍ୟତମ ବେଗମ ଯଦି ମେଜରଙ୍କ ସମକ୍ଷରେ ନିଜ ସ୍ୱାମୀଙ୍କ ଅତ୍ମ ଗୋପନ ସମ୍ବାଦ ଦେଇ ନଥାନ୍ତେ, ତେବେ ବୋଧହୁଏ ଉଭୟ ପରିବାରରେ ଏହିପରି ଶୋଚନୀୟ ମୃତ୍ୟୁ ସଂଘଟିତ ହୋଇ ନଥାନ୍ତା । ଏହି ଘଟଣା ଦ୍ୱାରା ଭାରତୀୟ ରାଜନୈତିକ ଅବସ୍ଥା ଉପରେ ପରିବର୍ତ୍ତିତ ହୋଇଅଛି, ସେ ବିଷୟ ଅମ୍ଭମାନଙ୍କ ଉପର୍ଯ୍ୟୁକ୍ତ ଆଲୋଚ୍ୟ ବିଷୟ ନୁହେଁ । କିନ୍ତୁ ଘଟଣା ମୂଳରେ ବେଗମଙ୍କ ବୁଦ୍ଧି ନିରପରାଧୀ ଉଭୟ ପରିବାର ବର୍ଗଙ୍କ ଅମୂଲ୍ୟ ନିର୍ଦ୍ଦୋଷ ଜୀବନ ଉପରେ ବିନଷ୍ଟ କଲା, ସେହି କଥା ଜଣାଇବା ଅମ୍ଭମାନଙ୍କ ଅଭିପ୍ରେତ ।

ହୁମାୟୁନ ଟୁମ୍ବ ନାମରେ ଯେଉଁ ଟୁମ୍ବ ଦର୍ଶକମାନେ ଦେଖନ୍ତି, ତାହା ହୁମାୟୁନଙ୍କ 'ଅସଲ' ଟୁମ୍ବ ନୁହେଁ, ଏହା ନକଲ ମାତ୍ର ।

'ଅସଲ' ଟୁମ୍ବ 'ନକଲ' ଟୁମ୍ବର ୧୦ ଫୁଟ ତଳେ ବିଦ୍ୟମାନ । ପୁଣି ଏହି ଅସଲ ଟୁମ୍ବର ୭ ଫୁଟ ତଳେ ସମ୍ରାଟ ହୁମାୟୁନଙ୍କ ଶବ କବର ହୋଇଅଛି । ଉପର କବରଟି ମର୍ମର ପଥରରେ ନିର୍ମିତ ହୋଇଅଛି । ଏହା ୨ ଫୁଟ ୧ ଇଞ୍ଚ ଉଚ୍ଚ, ୭ ଫୁଟ ଲମ୍ବ ଓ ୨ ଫୁଟ ଓସାର, ଏହାର ମୂଳ ଭିତ୍ତି ଗୃହର ମଧ୍ୟ ଭାଗରେ ବିଦ୍ୟମାନ ।

ଉପରେ ଲିଖିତ ହେଲା ଯେ, ଟୁମ୍ବମାନଙ୍କ ଚତୁର୍ଦ୍ଦିଗରେ ଶବ କବର କରାଯିବା ୪୦ ଦିନ ପର୍ଯ୍ୟନ୍ତ କୋରାଣ ପାରାୟଣ କରାଯିବା ପାଇଁ ଗୋଟିଏ ଗୋଟିଏ ଛୋଟ କୋଠରୀ ବିଦ୍ୟମାନ ଅଛି । ପୁଣି ଏହି କୋଠରୀର ଉପର ଭାଗରେ ଅନ୍ୟ କୋଠରୀ ମଧ୍ୟ ଅଛି । ଏହି କୋଠରୀମାନ ମୁସଲମାନ ଦୃଷ୍ଟିରେ କାହିଁକି, ଅନ୍ୟାନ୍ୟଙ୍କ ଦୃଷ୍ଟିରେ ମଧ୍ୟ ବଡ଼ ପବିତ୍ର । ବହୁ ଦିନ ବ୍ୟାପୀ କୋରାଣ ପାରାୟଣ ଦ୍ୱାରା ଏହାର କଳେବର ପବିତ୍ର ଆଧାତ୍ମିକ ରସରେ ପ୍ଲାବିତ ହୋଇଅଛି । ପୁଣି ପୁଣ୍ୟ ଶ୍ଳୋକ ଅକବର ଯେତେବେଳେ ଭାରତର ସମ୍ରାଟ ଥିଲେ, ସେତେବେଳେ ଏହି ପ୍ରକୋଷ୍ଠମାନ ପାଠଶାଳା ରୂପେ ବ୍ୟବହୃତ ଥିଲା । ଅକବର ଅନନ୍ୟ ସାଧାରଣ ବିଦ୍ୟାପ୍ରେମୀ ଥିବା ଭାରତବାସୀମାନେ ଜାଣନ୍ତି । ଏହି ପବିତ୍ର ପୀଠରେ ବିଦ୍ୟାର୍ଜ୍ଜନ କରିବା ଉପଯୁକ୍ତ ଭାବି, ପୀଠର ମର୍ଯ୍ୟାଦା ରକ୍ଷା କରିଥିଲେ । ପରବର୍ତ୍ତୀ ସମ୍ରାଟମାନେ ମଧ୍ୟ ଅକବର-ଶାହାଙ୍କ ପଦାଙ୍କ ଅନୁସରଣ କରି, ଏହା ବିଦ୍ୟାପୀଠ ରୂପେ ବ୍ୟବହାର କଲେ ।

ମଧ୍ୟ କୋଠରୀ ତଥା ପାର୍ଶ୍ୱ କୋଠରୀମାନଙ୍କ ଚତୁପାର୍ଶ୍ୱରେ ବର୍ତ୍ତମାନ କାଚ ଖଣ୍ଡମାନଙ୍କରେ ନାନା ପ୍ରକାର କାରୁକାର୍ଯ୍ୟ ଖଚିତ ହୋଇଅଛି । ଏହି କାରୁକାର୍ଯ୍ୟରେ ଭାରତୀୟ କଳା ସଂସ୍କୃତି ସୁସ୍ପଷ୍ଟ ଜଣାଯାଏ । କଥିତ ହୁଏ, କାଚଖଣ୍ଡ ସ୍ଥଳେ ଇତପୂର୍ବେ ନବରତ୍ନ ଖଚିତ ହୋଇଥିଲା । ଏହି ନବରତ୍ନ ମଣ୍ଡିତ ହୋଇଥିବା ଯୋଗୁଁ ଘରରେ ଅଲୋକ ଆବଶ୍ୟକ ହେଉ ନଥିଲା । ହୁମାୟୁନ ତୁମ୍ବ ଏହି-ପରି ସର୍ବାଙ୍ଗୀନ ଶୋଭାଗାର ହୋଇ ଦିନେ ଭାରତ ଗଗନର ସୂର୍ଯ୍ୟ ପ୍ରାୟ ପ୍ରତିଭାତ ହୋଇଥିଲା । ବର୍ତ୍ତମାନ ତାହା ଅସ୍ତମିତ ହୋଇଅଛି ।

———:O:———

## ଦିଲ୍ଲୀ ନଗରରେ ପ୍ରାଚୀନ ଜ୍ୟୋତିଃଶାଳା

[ ଯନ୍ତ୍ର-ମନ୍ତ୍ର ]

କେହି ଭ୍ରମଣକାରୀ ଯଦି ଦିଲ୍ଲୀ ନଗରୀ ଦେଖିବାକୁ ଯା'ନ୍ତି ତେବେ ସେ ଅବଶ୍ୟ 'କୁତୁବ ମିନାର' ଦେଖିବାକୁ ଭୁଲିବେ ନାହିଁ । କାରଣ ଏଥିରେ ଗୃହ ନିର୍ମାଣର କଳା-କୌଶଳ ପୂର୍ଣ୍ଣ ମାତ୍ରାରେ ରହିଅଛି । ଉଲ୍ଲେଖଯୋଗ୍ୟ, କୁତୁବମିନାର ଯେଉଁ ସହର ନିକଟରେ ଅଛି, ଯୁକ୍ତ ସଡ଼କ ୩୍ୟ ମାଇଲ ସୂଚକ ପଥର ନିକଟରେ ସଡ଼କର ବାମ ପାର୍ଶ୍ୱରେ ଗୋଟିଏ ଜ୍ୟୋତିଃଶାଳା ଦେଖିବାକୁ ପାଇବେ । ଏଥିରେ ଗୃହ ନିର୍ମାଣର କୌଣସି କଳା-କୌଶଳ ଦେଖାଯାଏ ନାହିଁ ସତ କିନ୍ତୁ ଏଥିରେ ବିଜ୍ଞାନ କୌଶଳ ଥିବାରୁ ବିଜ୍ଞାନବାଦୀ ବିଶେଷତଃ ଜ୍ୟୋତିଷିମାନେ ଏଥିପ୍ରତି

ବିଶେଷ ଆଦର ଦେଖାଇଥାନ୍ତି । ଏହି ଜ୍ୟୋତିଃଶାଳାକୁ ସାଧାରଣ ଲୋକେ 'ଯନ୍ତ୍ର-ମନ୍ତ୍ର' ବୋଲି କହିଥାନ୍ତି ।

ଏହି ଜ୍ୟୋତିଃଶାଳା ସ୍ୱତନ୍ତ୍ରଭାବରେ ଥିବା ଜୟପୁର ରାଜ୍ୟର ଶାସନକର୍ତ୍ତା ତତ୍କାଳୀନ ରାଜା 'ଜୟସିଂହ' (୧୬୯୯-୧୭୪୩ ଖ୍ରୀଷ୍ଟାବ୍ଦ) ଯେ କି ଧସବୋଃ ରାଜପରିବାରର ପୂର୍ବପୁରୁଷ ଥିଲେ, ସେ ନିର୍ମାଣ କରାଇଥିଲେ । ଜ୍ୟୋତିଷଶାସ୍ତ୍ରରେ ତାହାଙ୍କର ସମସାମୟିକ କେହିହେଲେ ତାଙ୍କ ସଙ୍ଗେ ସମକକ୍ଷ ନଥିଲେ । ତାଙ୍କ ସମୟରେ ଯେଉଁ ପଞ୍ଜିକା ବ୍ୟବହୃତ ହେଉଥିଲା, ସେଥିରେ ସେ ନାନା ପ୍ରକାର ଭ୍ରମ ଦେଖିପାଇଥିଲେ ଏବଂ ଏହି ଭ୍ରମସବୁ ସଂଶୋଧନ କରିବା ପାଇଁ ଖ୍ରୀ ୧୭୧୦ ଖ୍ରୀଷ୍ଟାବ୍ଦରେ ସେ ଏହି ଜ୍ୟୋତିଃଶାଳା ନିର୍ମାଣ କରାଇଥିଲେ । ସେହି ସମୟରେ ଗ୍ରହ ଓ ନକ୍ଷତ୍ର ମାନଙ୍କର ଆକାର, ଗତି, ପରସ୍ପର ମଧ୍ୟବର୍ତ୍ତୀ ଦୂରତା ଇତ୍ୟାଦି ବିଷୟ ଗବେଷଣା କରିବା ଦିଗରେ ଏହି ଜ୍ୟୋତିଃଶାଳା ଏକମାତ୍ର ଉପାୟ ଥିଲା । ଏଣୁ ଏହି ଶାଳା ପ୍ରତି ବୈଜ୍ଞାନିକମାନଙ୍କର ବିଶେଷ ଆଦର ଥିଲା । କାଳକ୍ରମେ ଦୂରବୀକ୍ଷଣଯନ୍ତ୍ର, ଥିଓଡ ଲାଇଟ ପ୍ରଭୃତି ଉପାଦେୟ ଯନ୍ତ୍ରମାନ ଆବିଷ୍କୃତ ହେବାରୁ ଏହି ଜ୍ୟୋତିଃଶାଳା ଆବଶ୍ୟକତା ଦୂରୀଭୂତ ହୋଇଗଲା ।

ସମ୍ପ୍ରତି ଜୟପୁରର ପରବର୍ତ୍ତୀ ରାଜାମାନେ ରାଜା ଜୟସିଂହଙ୍କର ଏହି ପ୍ରାଚୀନ କୀର୍ତ୍ତିକୁ ପ୍ରଗାଢ଼ ଯତ୍ନର ସହିତ ରକ୍ଷା କରି ଅଛନ୍ତି । ଅଳ୍ପ ସମୟ ଏହାର ସମ୍ପୂର୍ଣ୍ଣ ମରାମତିର ଭାର ଜୟପୁର ରାଜ୍ୟର ଇଞ୍ଜିନିଅରିଂ ବିଭାଗର କର୍ମଚାରୀଗଣ ଅର୍ଥାତ C. E.

Stotherd Exq., Lala Chimanlal, Daroga Imerat ଏମାନଙ୍କ ଉପରେ ପଡ଼ିଥିବାରୁ ମରାମତି କାର୍ଯ୍ୟରେ ହସ୍ତକ୍ଷେପ କରିବା ପୂର୍ବରୁ ପ୍ରତ୍ୟେକ ଅଂଶ ଅନୁଶୀଳନ କରି ଏହାର ବିଜ୍ଞାନ ସମ୍ବନ୍ଧେ ସମ୍ପୂର୍ଣ୍ଣ ଶିକ୍ଷା କରିବାକୁ ପଡିଥିଲା । କୌଣସି ଭୂଗୋଳ ସମ୍ବନ୍ଧେ, ବା ତାହାର କୌଣସି ସ୍ଥାନ ସମ୍ବନ୍ଧେ ଜ୍ଞାନ ଲାଭ କରିବାକୁ ହେଲେ ଭୂଗୋଳର ସେହି ସ୍ଥାନରBearing ଏବଂ ଭୂଗୋଳର Equator, Latitude, Meridian, Langitude poles, Axis, ପ୍ରଭୃତି ପ୍ରଥମେ ସ୍ଥିର କରିବାକୁ ହୁଏ । ସେହିପରି କୌଣସି ଖ-ଗୋଳ ସମ୍ବନ୍ଧେ ଜ୍ଞାନ ଲାଭ କରିବାକୁ ହେଲେ ସେହି ଖ-ଗୋଳର Azimuth ପୂର୍ଣ୍ଣ ସମସ୍ତ ଖ-ଗୋଳର Equator Declination,Meridian Right ascen -sion,Poles, Axis ପ୍ରଭୃତି ସ୍ଥିର କରିବାକୁ ହୁଏ । ଭୂଗୋଳ ସମ୍ବନ୍ଧେ ଏହା ସ୍ଥିର କରିବା ଯେତେଦୂର କଷ୍ଟ, ଖ-ଗୋଳ ସମ୍ବନ୍ଧେ ଏହା ସବୁ ସ୍ଥିର କରିବା ତତୋଽଧିକ କଷ୍ଟକର ବ୍ୟାପାର । ଏହା ପୂର୍ବେ ଖ୍ରୀ ୧୭୧୦ ଅବ୍ଦରେ ଯେଉଁ ସମୟରେ ବ ଅଧୁନାତନ ଉପାଦେୟ ଯନ୍ତ୍ରର ଉଦ୍ଭାବନ ଜଣା ନଥିଲା, ସେହି ସମୟରେ ଏହି ଅସାଧାରଣ ଜ୍ୟୋତିଃଶାଳା ସାହାଯ୍ୟରେ କୌଣସି ଭୁଲ ନକରି ଯାହା ସ୍ଥିର କରିଯାଇ ପାରୁଥିଲା, ଏଥିରୁ ରାଜା ଜୟସିଂହ କେତେ ଜ୍ୟୋତିଷିକ ଥିଲେ, ସହଜରେ ଅନୁମେୟ । ଏହି ଜ୍ୟୋତିଃଶାଳାରେ ଚାରିଗୋଟି ଯନ୍ତ୍ର ନିର୍ମାଣ କରାଯାଇଥିଲା ।

[୧] ସମ୍ରାଟ ଯନ୍ତ୍ର [୨] ରାମ ଯନ୍ତ୍ର [୩] ଜୟପ୍ରକାଶ ଯନ୍ତ୍ର ଏବଂ [୪] ମିଶ୍ର ଯନ୍ତ୍ର ।

ଉପରୋକ୍ତ ଜୋଂଷ୍ଟ ଯନ୍ତ୍ରରେ ଯେଉଁ ସବୁ ବିଜ୍ଞାନ ପୂର୍ଣ୍ଣ ରହିଅଛି, ତାହା ସବୁ ବୁଝାଇ ବସିଲେ ଗୋଟିଏ ପ୍ରକାଣ୍ଡ ଗ୍ରନ୍ଥ ହୋଇ ପଡ଼ିବ । ପୁଣି ଏହା ଏକ ଦୁଃସାଧ ବ୍ୟାପାର । ଅତଏବ ଏହି ସବୁ ସମ୍ବନ୍ଧେ ଅମ୍ଭେ କିଛି କ୍ଷାନ୍ତ ଦେବୁଁ ।

[୧] ସମ୍ରାଟ ଯନ୍ତ୍ର—ଦିଲ୍ଲୀ ନଗରୀ ୨୮°-୩୯ ଉତ୍ତରରେ ଅବସ୍ଥିତ । ଏହାପ୍ରତି ଦୃଷ୍ଟି ଦେଇ ଏହି ଯନ୍ତ୍ର ନିର୍ମିତ ହୋଇଅଛି । ଏହି ଯନ୍ତ୍ର ସମୟ ଜାଣିବା ପାଇଁ ଘଡ଼ି ପରି କାର୍ଯ୍ୟ କରେ । ଏହି ସମ୍ରାଟ ଯନ୍ତ୍ରର ନିମ୍ନାଂଶରେ ଷଷ୍ଠାଂଶ ନାମକ ଗୋଟିଏ ଯନ୍ତ୍ର ଅଛି । ଏହା ସାହାଯ୍ୟରେ Altitude ଏବଂ Diclination ଜଣା ଯାଉଥିଲା । କିନ୍ତୁ ବର୍ତ୍ତମାନ ଏହି ଷଷ୍ଠାଂଶ ଯନ୍ତ୍ର ପାଣି ତଳରେ ବୁଡ଼ି ରହିଅଛି ।

[୨] ରାମଯନ୍ତ୍ର—ଏହି ଯନ୍ତ୍ର ଦୁଇ ଅଂଶରେ ବିଭକ୍ତ କରାଯାଇ ଦୁଇ ଅଂଶକୁ ପୃଥକ ପୃଥକ କରି ନିର୍ମାଣ କରାଯାଇ ଅଛି । କାରଣ ଏହା କରିବା ଦ୍ୱାରା କୌଣସି ଖ-ଗୋଳର Altitude ଏବଂ Azimuth ସହଜରେ ଜଣା ପଡ଼େ ।

[୩] ଜୟପ୍ରକାଶ ଯନ୍ତ୍ର—ଏହି ଯନ୍ତ୍ରକୁ ମଧ୍ୟ ଦୁଇଟି ଅଂଶରେ ପୃଥକ ପୃଥକରେ ନିର୍ମାଣ କରାଯାଇଅଛି । ଗୋଟିଏ ଗୋଲାର୍ଦ୍ଧ ଖ-ଗୋଳକୁ ଅନୁକରଣ କରି ଏହି ଯନ୍ତ୍ର ନିର୍ମିତ ହୋଇଅଛି । ଏହି ଯନ୍ତ୍ର ଉପରେ Azimuth, Meridian Equator, Zenith ପ୍ରଭୃତି ଜାଣିବା ପାଇଁ ରେଖା ସବୁ ଟଣା ଯାଇଅଛି । ଏହା ଉପରେ ସୂର୍ଯ୍ୟର ପ୍ରତିବିମ୍ବ ପଡ଼େ । ଏହି ପ୍ରତିବିମ୍ବକୁ ଧରି

ସୂର୍ଯ୍ୟଙ୍କର declination azimuth, altitude ପ୍ରଭୃତି ଜଣାଯାଏ ।

[୪] ମିଶ୍ର ଯନ୍ତ୍ର—ଏଥି [୧] ସମ୍ରାଟ ଯନ୍ତ୍ର [୨] ଦକ୍ଷିଣ ଭିତ୍ତି ଯନ୍ତ୍ର [୩] ନିୟତଚକ୍ର ଯନ୍ତ୍ର ଏବଂ [୪] କାରକ ରାଶିବଳୟ— ଏହି ଚାରିଗୋଟି ଯନ୍ତ୍ରର ସମଷ୍ଟି । ଏଣୁ ଏହାକୁ ମିଶ୍ର ଯନ୍ତ୍ର କୁହାଯାଏ । ଏହି ଯନ୍ତ୍ର ସାହାଯ୍ୟରେ ଭାରତର ଦିଲ୍ଲୀ ସହର, ଜାପାନର ନୋଟକେ ସହର, ଇଟାଲୀର ଯୁରିଚ ସହର, ଇଂଲଣ୍ଡର ଗ୍ରୀନ୍ ଉଇଚ ସହର ଏହି ସ୍ଥାନମାନଙ୍କର ସମୟର ତାରତମ୍ୟ ଜଣାଯାଏ ।

—:0:—

## ଲାଲ କିଲ୍ଲା

ମୋଗଲ ସାମ୍ରାଜ୍ୟର ଅତୀତ ଗୌରବ ସ୍ମରଣ କରିବାକୁ ହେଲେ, ଶିଳ୍ପ-କୁଶଳୀ 'ଲାଲକିଲ୍ଲା'ର ଅନୁପମ କମନୀୟ କାନ୍ତି ସର୍ବପ୍ରଥମେ ଦର୍ଶନ କରିବା ଆବଶ୍ୟକ । ମୋଗଲ ସମ୍ରାଟଗଣ ତାଙ୍କ ତାଙ୍କ ଶାସନର ଶକ୍ତି ଓ ପରାକ୍ରମ ଚିର ଦିନ ସକାଶେ ପୃଥିବୀରେ ଅକ୍ଷୁର୍ଣ୍ଣ ରଖିବା ସକାଶେ ବୋଧହୁଏ ଏହିପରି ପ୍ରାସାଦ ଆୟୋଜନ କରିଥିଲେ । ଯେଉଁ ସମ୍ରାଟଗଣ ଏହି ସମସ୍ତ ଅକ୍ଷୟ କୀର୍ତ୍ତିର ଉଦ୍ଧାତା, ତନ୍ମଧ୍ୟରୁ ପ୍ରତାପୀ ସାହାଜାହାନ ପ୍ରଧାନ, କହିଲେ ଅତ୍ୟୁକ୍ତି ହେବ ନାହିଁ । ଇତିହାସ ଏହାଙ୍କୁ ଅଟ୍ଟାଳିକା ନିର୍ମାତା ବୋଲି ଘୋଷଣା କରୁଅଛି । (Sahajahan the palace Builder) । ପୂର୍ବପ୍ରସଙ୍ଗରେ କୁହାଯାଇଅଛି ଯେ ପାଣ୍ଡବମାନଙ୍କ

LAHORI GATE--LALKILLA



ଲାହୋରଗେଟ—ଲାଲକିଲା ( ପୃ. ୩୬ ଷ୍ଠା. )

ଠାରୁ ଆରମ୍ଭ କରି ଶାହାଜାନଙ୍କ ପର୍ଯ୍ୟନ୍ତ ସମସ୍ତେ ଇନ୍ଦ୍ରପ୍ରସ୍ଥ ଦୁର୍ଗରେ ବାସକରି ଆସୁଥିଲେ କିନ୍ତୁ ସାହାଜାନଙ୍କ ସୁଖ-ସ୍ୱପ୍ନ ସେହି ପୁରାତନ ପାଣ୍ଡବ ଲକ୍ଷାରେ ତୃପ୍ତ ହେଲନାହିଁ । ସୁତରାଂ ସେ ଇନ୍ଦ୍ର-ପ୍ରସ୍ଥର ଦୁଇମାଇଲ ଦୂରରେ ନୂତନ ନଗର ଶୋଭାଶାଳିନୀ ଯମୁନା ନଦୀ କୂଳରେ ନିଜର କଳ୍ପିତ ସୌଧର ଭିତ୍ତି ସ୍ଥାପନ କରି ଅପରିମିତ ଧନ ବ୍ୟୟକରି ତାହା ପୂରଣ କରିଥିଲେ । ବର୍ତ୍ତମାନ ମା' ଯମୁନା ଏହି ଦୁର୍ଗର ନିକଟବର୍ତ୍ତିନୀ ନୁହନ୍ତି—ଉପ୍ତଦୂରରେ ବର୍ତ୍ତମାନ ପ୍ରବାହିତା ହୋଇ, ବୋଧହୁଏ ମୋଗଲ ସମ୍ରାଟଗଣଙ୍କ ବିଳାସ ବୈଭବ ପ୍ରତି ବିଦ୍ରୂପ କରୁ ଅଛନ୍ତି ।

ଏହି ପ୍ରକାଣ୍ଡ ଦୁର୍ଗର କାର୍ଯ୍ୟ ଖ୍ରୀ ୧୬୩୮ ଖ୍ରୀାବ୍ଦରେ ଆରମ୍ଭ ହୋଇ ଖ୍ରୀ ୧୬୪୮ ଖ୍ରୀାବ୍ଦରେ ଶେଷ ହୋଇଥିଲା । କଥିତ ହୁଏ, ଏହାର ପରିସମାପ୍ତି ପର୍ଯ୍ୟନ୍ତ ୧୫ କୋଟି ମୁଦ୍ରା ବ୍ୟୟିତ ହୋଇଥିଲା ଓ ଦୈନିକ ଦଶ ସହସ୍ର ଲୋକଙ୍କ ନିରବଚ୍ଛିନ୍ନ ପରିଶ୍ରମରେ ମଧ୍ୟ ଦୀର୍ଘ ଦଶ ବର୍ଷ ଲାଗିଥିଲା ।

"ଲାଲକିଲ୍ଲା" ଲାଲ ପାଷାଣମୟ ପ୍ରସ୍ତରରେ ନିର୍ମିତ ହୋଇଅଛି । ଏହି ଦୁର୍ଗ ତିନ ଗୋଟି ଦ୍ୱାର ଦ୍ୱାରା ପରିବେଷ୍ଟିତ ହୋଇଅଛି । ପ୍ରଥମ ଦ୍ୱାର "ଲାହୋର ଦ୍ୱାର"—ଏହା ଲାହୋର ଆଡ଼େ ମୁହଁ କରିଅଛି । ଦ୍ୱିତୀୟ ଦ୍ୱାର "ଦିଲ୍ଲୀ ଦ୍ୱାର" । ଦିଲ୍ଲୀ ଆଡ଼େ ମୁହଁ କରି ଥିବାରୁ ଏହାର ନାମ "ଦିଲ୍ଲୀ ଦ୍ୱାର" । ତୃତୀୟଦ୍ୱାର "ଶାହିଦ୍ୱାର"—ଏହି ଦ୍ୱାର ଦେଇ ସମ୍ରାଟମାନେ ତଥା ସେହିପରି ଉଚ୍ଚ ପଦସ୍ଥ ବ୍ୟକ୍ତିମାନେ କେବଳ ଗମନାଗମନ କରନ୍ତି । ଏହା ଯମୁନା ନଦୀ

ଅଚେତ ମୃର୍ତ୍ତ କରି ରହିଅଛି । ଖ୍ରୀ ୧୯୧୨ ରେ ଭାରତ ସମ୍ରାଟ ପଞ୍ଚମ ଜର୍ଜ ଏହି ଦ୍ୱାର ଦେଇ ଲାଲ କିଲ୍ଲାରେ ପ୍ରବେଶ କରି ପୁନର୍ବାର ସେହି ପ୍ରାଚୀନ ପ୍ରଥା ପ୍ରତି ସମ୍ମାନ ପ୍ରଦର୍ଶନ କରିଥିଲେ । ଲାଲ କିଲ୍ଲାର ପାଚେରୀ ୧½ ମାଇଲ ପରିଧିରେ ବ୍ୟାପ୍ତ । ପୂର୍ବ ଓ ପଶ୍ଚିମରେ ଦୁଇଟି ଲେଖାଏଁ ଲମ୍ବ କାନ୍ଥ ଓ ଦକ୍ଷିଣ ଏବଂ ଉତ୍ତରରେ ତିନୋଟି ଲେଖାଏଁ ଛୋଟ କାନ୍ଥ ଅଛି । ଏହା ଅସମାନ ଅଠ ପହଳ [Irregular octagonal] ଆକାର ଧାରଣ କରିଅଛି । ଯମୁନା ପାଖ କାନ୍ଥ ଗୁଡିକ ୬୦ ଫୁଟ ଉଚ୍ଚ ଓ ଦିଲ୍ଲୀ ତରଫ ଗୁଡିକ ୧୦୦ ଫୁଟ ଉଚ୍ଚ । ପ୍ରଥମେ ଏହି ଦୁର୍ଗ ଭିତରେ ୧୨ ଟି ବଡ ପ୍ରାସାଦ ଥିଲା, କିନ୍ତୁ ତାହା ଭାରତ ବିଦ୍ରୋହ ବା ସିପାହୀ ବିଦ୍ରୋହ [Indian Mutiny] ଅର୍ଥାତ ୧୮୫୭ ପରେ ଭଙ୍ଗା ଯାଇଅଛି । କେବଳ ସେଥିର କେତେକାଂଶ ଏବେ ରକ୍ଷିତ ହୋଇଅଛି । ଏହି ଭଗ୍ନ ପ୍ରାସାଦ ସ୍ଥଳରେ ସେନା ନିବାସ [Soldiers barracks] ଓ ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗୀୟ କାର୍ଯ୍ୟାଳୟ (Archaelogical Department) ମାନ ସ୍ଥାପିତ ହୋଇଅଛି । ରକ୍ଷିତ ଅଂଶ ମାନଙ୍କର ବିଶେଷ ବିବରଣୀ ଉପଯୁକ୍ତ ସ୍ଥଳରେ ଦିଆ ଯିବ ।

ଦୁର୍ଗର ଚତୁପାର୍ଶ୍ୱରେ ପୂର୍ବେ ଯମୁନା ନଦୀରୁ ପାଣି ଅଣାଯାଇ ଭରା ଯାଉଥିଲା । ଏବେ ସେଥି ସମ୍ପୃକ୍ତ ନାଳ ଅଛି, ମାତ୍ର ପାଣି ନାହିଁ । ପ୍ରତ୍ୟେକ ଦ୍ୱାର ଦେଇ ଯିବାକୁ ହେଲେ ଗୋଟିଏ ଗୋଟିଏ ପୋଲ ଦେଇ ଯିବାକୁ ହୁଏ । ପ୍ରତ୍ୟେକ ଦ୍ୱାର ପାଇଁ କାଠର ମଜବୁତ କବାଟ ଅଛି । ଗୋରା ସିପାହୀମାନେ ଏହି ଦ୍ୱାରମାନଙ୍କ

ରକ୍ଷକ ରୂପେ ନିଯୁକ୍ତ ହୋଇ ରହୁଛନ୍ତି । ଦୁର୍ଗ ପ୍ରବେଶ ପାଇଁ ଦୁଇ ପଣା ୧୬୨ ନିର୍ମିତ ହୋଇଅଛି । ଏଥିର କାନ୍ଥ ଲାଲ ପ୍ରସ୍ତରରେ ନିର୍ମିତ ହୋଇଅଛି ଓ ଉପର ଭାଗରେ ଗୋଟିଏ ଗୋଟିଏ ଥର୍ଚି ଅଛି । ସମୁଦାୟ କାନ୍ଥରେ ୨୯ଗୋଟି ଗଡ଼ବନ୍ଧ ବା ବୁରୁଜ (Bastions) ଅଛି,ଯାହା କାନ୍ଥ ଉପର ଭାଗରେ ରହେ । ସେଥିରେ ଫୌଜ କପ୍ତାନମାନେ ରହନ୍ତି । ଦୁର୍ଗ ଭିତରୁ ଗୁଳ ମାରିବା ପାଇଁ ଛିଦ୍ର ପ୍ରସ୍ତୁତ ହୋଇ ଫାଙ୍କମାନ ଅଛି । ପଶ୍ଚିମ ପାର୍ଶ୍ୱରେ କାନ୍ଥକୁ ଲଗି ଅନ୍ଦର ମହଲ ଅଛି । ପୂର୍ବ ପାର୍ଶ୍ୱରେ ଲମ୍ବା କାନ୍ଥ ଉପରେ ମହଲ ନିର୍ମିତ ହୋଇଅଛି । ଉକ୍ତ ପାର୍ଶ୍ୱରେ ଯମୁନା ନଦୀ ପ୍ରବାହିତ ହୋଇଥିବା ଯୋଗୁଁ ଶତ୍ରୁମାନଙ୍କ ଆକ୍ରମଣ ସମ୍ଭବ ନୁହେ । ସୁତରାଂ ସେ ପାଖରେ କାନ୍ଥ ନାହିଁ । ନଦୀ ପାଖରେ ବା ପୂର୍ବରେ ପ୍ରାଚୀନ ଜେଲ୍ ଖାନାମାନ ଥିଲା, ଏବେ ସୁଦ୍ଧା ସେ ସମସ୍ତ ଅଛି ଓ ରାଜନୈତିକ ବନ୍ଦୀ (Political Prisoners) ସେଠାରେ ଆବଦ୍ଧ ହୋଇ ରହି ଅଛନ୍ତି । ଲାଲ କିଲ୍ଲାର ତିନୋଟି ଦ୍ୱାର ମଧ୍ୟରୁ କେବଳ ଲାହୋରୀ ଦ୍ୱାର ସର୍ବଦା ଉନ୍ମୁକ୍ତ ରହୁଥାଏ, ମାତ୍ର ଅନ୍ୟ ଦ୍ୱାରମାନ ନିରନ୍ତର ବନ୍ଦ ରହୁଥାଏ । ଆମ୍ଭେମାନେ ଏହି ଲାହୋରୀ ଦ୍ୱାର ଦେଇ ଦୁର୍ଗ ଭିତରକୁ ଯାଇଥିଲୁ । କିଲ୍ଲା ବାହାରେ ଅନେକ ବଜାର ଥିବା କଥିତ ହୁଏ—ଏବେ କିନ୍ତୁ ସେ ସମସ୍ତ ନାହିଁ ।

"ଲାଲ କିଲ୍ଲା" ଓ ପ୍ରାଚୀର ସମ୍ବନ୍ଧେ କେବଳ ଉପରୋକ୍ତ ବିବରଣୀ ଦେଇଅଛୁଁ । ଏହି ପ୍ରାଚୀର ବାହାରେ ନଗର ପ୍ରାଚୀର (City Wall) ସମ୍ବନ୍ଧେ ମଧ୍ୟ କେତେକ ଜ୍ଞାତବ୍ୟ ବିବରଣୀ ଦେବା ଆବଶ୍ୟକ ବୋଧ କରେ ।

ନଗର ପ୍ରାଚୀନ ବା ଦିଲ୍ଲୀ ସହର ପରିବେଷ୍ଟିତ ପ୍ରାଚୀରରେ ପାଞ୍ଚ ଗୋଟି ଦ୍ୱାର ଅଛି । ଯଥାଃ—ଦିଲ୍ଲୀ ଗେଟ୍, କାଶ୍ମୀର ଗେଟ, ମୁର୍ ଗେଟ ଓ ଅଜମିର୍ ଗେଟ । ଯେଉଁ ଗେଟ ବା ଦ୍ୱାର ଯେଉଁ ଦେଶ ଆଡ଼େ ମୁଖ କରି ରହିଅଛି, ସେହି ଦ୍ୱାର ସେହି ଦେଶ ନାମରେ ଅଭିହିତ ହୋଇଅଛି । ଏହି ପ୍ରାଚୀର ଅନେକଦିନ ଭାଙ୍ଗି ଯାଇଅଛି ପୁଣି ସ୍ଥାନେ ସ୍ଥାନେ କଟା ଯାଇ ବେଡ଼ ମଧ୍ୟ ପଡି ଗଲାଣି । ସମସ୍ତ ପ୍ରାଚୀର ଖଲା ଅକର୍ମୀ ପ୍ରସ୍ତରରେ ନିର୍ମିତ ହୋଇଥିଲା । ଶତ୍ରୁମାନେ ଦୁର୍ଗ ଆକ୍ରମଣ କଲେ ଏହି ସୁଦୃଢ଼ ପ୍ରତିବନ୍ଧକ ଭେଦ କରିବାକୁ ପଡୁଥିଲା ।

କଷ୍ଟାଦ୍ୱାର ଅତିକ୍ରମ କରି ଦର୍ଶକ କ୍ରମାନ୍ୱୟରେ ଓ କି ସ୍ଥାନ ଦେଖିବାକୁ ହେବ ତାହା ନିମ୍ନରେ ଲେଖାଯାଉଅଛି । ପାଣ୍ଡବ କଷ୍ଟାରେ ଯେପରି ଗୋଟିଏ ଗୋଟିଏ 'ଦୋଷର୍' ଦ୍ୱାର ଦେଖିରେ ଥାଏ, ସେପରି ଏଠାରେ କିଛିନାହିଁ । ପ୍ରଥମେ ଥିଲା କି ନାହିଁ ତାହା କହି ହେବ ନାହିଁ, କାରଣ ମୋଟର ଯାତାୟାତ କରିବା ପାଇଁ ଦୋଷଗୁ ପରିବର୍ତ୍ତେ ବେଡ଼ ନିର୍ମାଣ ହୋଇଅଛି । ବର୍ତ୍ତମାନ୍ ମୋଟର ସ୍ୱଚ୍ଛନ୍ଦରେ କଷ୍ଟା ଭିତରକୁ ଯାଏ । ମାତ୍ର ସମସ୍ତେ ଯିବାପାଇଁ ନିଷେଧ ନାହିଁ ।

[୧] ପ୍ରଥମ ଦ୍ୱାରରେ ବନ୍ଧୁକ—ହସ୍ତ ଗୋରା ସିପାହିମାନେ ଦ୍ୱାରରକ୍ଷକ ରୂପେ ରହିଥାନ୍ତି । ଏହିଦ୍ୱାର ଅତିକ୍ରମ କଲେ, ବଜାର ଗୃହିଏ ପଡେ । ଦୁଇ ପାର୍ଶ୍ୱରେ ଅଙ୍ଗଥାଇ ଛୋଟ ଛୋଟ କୋଠରି ମାନ ଅଛି, ଏସମସ୍ତ ପ୍ରାଚୀନ କାଳରେ ନିର୍ମାଣ ହୋଇଅଛି । ପୂର୍ବେ

ସେନା ନିବାସ (Cantonment) ଏହିଠାରେ ଥିଲା, ଏବେ ମଧ୍ୟ ଅଛି ।

ଏହି ବଜାରମାନଙ୍କରେ ଅଧିକାଂଶ ପଦାର୍ଥମାନ ବିକ୍ରି ହୁଏ । ପୂର୍ବେ ଏହି ବଜାରରୁ ଅନ୍ଦର ମହଲମାନଙ୍କୁ ଜିନିଷ ଯାଉଥିଲା । ଯେଉଁ କୋଠରୀମାନଙ୍କ କଥା ଉଲ୍ଲେଖ କରାଗଲା, ସେମାନଙ୍କ ଉପର ଭାଗରେ ଅନ୍ୟ ଗୋଟିଏ ପ୍ରସ୍ଥ କୋଠରୀ ଅଛି । ଏହି କୋଠରୀ ଗୁଡ଼ିକ ବାଦଶାହାଙ୍କର ଅଗଣିତ ଦର୍ଶକମାନଙ୍କ ନିବାସ ପାଇଁ ଉଦ୍ଦିଷ୍ଟ ଥିଲା । ଅନ୍ୟ ଦୁଇଗୋଟି କୋଠରୀ ମଧ୍ୟ ଅଛି, ତାହା ମୁନ୍‌ସି ମାନଙ୍କ ଅଫିସ ଥିଲା ।

[୨] ଏହି ବଜାରର କିମ୍ବଦନ୍ତୀରେ ଠିକ ସାମନାରେ "ନକ୍‌ବର୍‌ଖାନା" ନାମକ ଗୋଟିଏ ଘର ଅଛି । ଏହି ଘର ଅତି ଉଚ୍ଚ, ଏମନ୍ତକି ଗୋଟିଏ ମସ୍ତହାତୀ ହାଉଦାରେ ଏହି ଦ୍ୱାରଦେଇ ଯାଇ ପାରେ । ଲୋକେ ଏହି ଦ୍ୱାର ଉପର ଦେଇ ଯିବା ଅସମ୍ଭବ କରନ୍ତି । ପୂର୍ବେ ଏହି ପ୍ରକାଣ୍ଡ ଗୃହ ଦୁଇପାର୍ଶ୍ୱରେ ଥିବା ଦୁଇଗୋଟି ଅଟ୍ଟରେ ଧନକୁ ପାଞ୍ଚଥର ନକ୍‌ବତ୍ ବାଜୁଥିଲା । ଏହି ଦୋତାଲା ଗୃହମାନଙ୍କରେ ପୂର୍ବେ ଅଗଣିତ ଭଦ୍ରବ୍ୟକ୍ତିମାନେ ମଧ୍ୟ ରହୁଥିଲେ ଏବେ ଭାରତ ସମର ସ୍ମୃତି (Indian War Memorial) ହୋଇଅଛି ।

ଅନ୍ଦର—ମହଲରେ ଘଣ୍ଟି ବାଜିବା ପାଇଁ ଏହି ସ୍ଥଳରୁ ଗୋଟିଏ ସୁନ୍ଦର ଅଯୋଜନ ହୋଇଥିଲା । ଯଦି କୌଣସି ରାଜା,

ମହାରାଜା ବା ଚକ୍ରବର୍ତ୍ତୀ ଅସି କକ୍ଷାଦ୍ୱାରରେ ଉପଗତହୁଅନ୍ତି, ତେବେ ଅନ୍ତଃପୁର ଶାୟିତ ବାଦଶାହାଙ୍କୁ ହଠାତ୍ ଜଣାଇବା ପାଇଁ ଏହି ଦ୍ୱାରଠାରେ ଥିବା ଗୋଟିଏ ଦଉଡ଼ି ଟଣାଯାଏ । ଦଉଡ଼ି ଟଣାଗଲେ ଅନ୍ତଃପୁରରେ ବାଦଶାହଙ୍କ କକ୍ଷରେ ଥିବା ଘଣ୍ଟି ବାଜେ । ସମ୍ରାଟ ଅତିଥିଙ୍କ ଆଗମନ ଏହି ଘଣ୍ଟିରୁ ବୋଧକରନ୍ତି ସମ୍ଭବତ ସତ୍କାର ସକାଶେ ଦ୍ୱାର ଦେଶ ପର୍ଯ୍ୟନ୍ତ ଆସନ୍ତି । ଏହି ଉଦାର ଆୟୋଜନ ଯୋଗୁଁ ସମ୍ରାଟଙ୍କ ମଧୁର ସ୍ୱଭାବ ଏବେ ସୁଦ୍ଧା ମନଶ୍ଚକ୍ଷୁରେ ପ୍ରତିଭାତହୁଏ ।

ନହବତ୍ ଖାନାର ଠିକ୍ ସାମନାରେ—"ଦେଓ୍ୱାନ ଆମ" [General audiance Hall] ପ୍ରାୟ ୧୦୦ ହାତ ଦୂରରେ ବିଦ୍ୟମାନ । ସମ୍ରାଟଙ୍କ ବଡ଼ ବଡ଼ ଦରବାରମାନ ଏହି ଉନ୍ମୁକ୍ତ ଜାଗାରେ ହୁଏ । ଏକ ସହସ୍ର ରୁପା ଖମ୍ବ ସମ୍ବଳିତ ଗୋଟିଏ ବୃହତ୍ ମୁସଦାବାଦ୍ ସାମିଆନା—ଏହି ଉନ୍ମୁକ୍ତ ସ୍ଥଳରେ ଟଣାଯାଏ । ତେବେ କେବଳ ଏହି ପ୍ରଶସ୍ତ କ୍ଷେତ୍ର ପୂର୍ଣ୍ଣ ଆଚ୍ଛାଦିତ ହୁଏ ।

—:o:—

## ଦିଓ୍ୱାନୀ ଆମ୍

ଏହାପରେ ଦର୍ଶକ ଠିକ ସାମନାରେ ଥିବା "ଦିଓ୍ୱାନୀ ଆମ୍'କୁ ଯିବାକୁ ହେବ । ଏହା ଗୋଟିଏ ଲାଲ-ଡାଳମ୍ବା ପଥରର ଷାଠିଏ ଖମ୍ବ ବେଷ୍ଟିତ ବୃହତ୍ ମଣ୍ଡପ । ମଣ୍ଡପର ଉତ୍ତପାର୍ଶ୍ୱ ଶୋଭା

କରୁ ପଛପାର୍ଶ୍ୱରେ କାନ୍ଥ ଅଛି । ଏହି କାନ୍ଥକୁ ଲାଗି ଗୋଟିଏ ସୁନ୍ଦର ମର୍ମର ସିଂହାସନ ନିର୍ମିତ ହୋଇଅଛି । ସୂକ୍ଷ୍ମ କାରୁକାର୍ଯ୍ୟ ଓ ଐତିହାସିକ ପ୍ରସିଦ୍ଧି ଯୋଗୁଁ ଏହା ଜଗତର ଏକ ଅମୂଲ୍ୟ ପଦାର୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏମନ୍ତ କି ପାଶ୍ଚାତ୍ୟ ଜଗତର ପ୍ରଧାନ ପ୍ରଧାନ ଶିଳ୍ପୀମାନେ ଏହି ସିଂହାସନର କାରୁକାର୍ଯ୍ୟରେ ମୁଗ୍ଧ ହୋଇ ଭାରତର ତଦାନୀନ୍ତନ ଶିଳ୍ପ ବିଦ୍ୟାର ଭୂରି ଭୂରି ପ୍ରଶଂସା କରି ଅଛନ୍ତି । ସିଂହାସନ ଉପରେ ଗୋଟିଏ ଛାତ ଅଛି, ତଳେ ଶୁଭ୍ର ମର୍ମର ପ୍ରସ୍ତର ପଡ଼ିଅଛି ପୁଣି ପାର୍ଶ୍ୱରେ ଗୋଟିଏ ଚୌକୀ ଅଛି । ଚୌକୀର କାରୁକାର୍ଯ୍ୟ ମଧ୍ୟ ପ୍ରଶଂସନୀୟ । କଥିତ ଅଛି, ଯେତେବେଳେ ସମ୍ରାଟଙ୍କ ଦରବାର ହୁଏ ସମ୍ରାଟଙ୍କ ପ୍ରଧାନ ଓଜୀର ଏହି ଚୌକୀ ଆସନରେ ଛିଡ଼ାହୋଇ ଦରଖାସ୍ତ ସବୁ ସମ୍ରାଟଙ୍କୁ ବଢ଼ାଉ ଥାନ୍ତି । ଦୀୱାନୀ ଆମ୍‌ରେ ସମ୍ରାଟ ବଡ଼ ବଡ଼ ଦରବାରମାନ କରନ୍ତି । ଏହି ଦରବାର ଅନୁଷ୍ଠାନ ହେଲାବେଳେ 'ନଉବତଖାନା' ଠାରୁ 'ଦୀୱାନୀ ଆମ୍' ପର୍ଯ୍ୟନ୍ତ ପୂର୍ବକଥିତ ସାମିୟାନା ଟଣାଯାଏ ଓ ସମୁଦାୟସ୍ଥଳ ମୂଲ୍ୟବାନ ପାରସ୍ୟ ଗାଲିଚାମାନଙ୍କ ଦ୍ୱାରା ଆଚ୍ଛାଦିତ ହୁଏ । ସିଂହାସନର ଉଚ୍ଚତା ଓ ଅବସ୍ଥାନ ପରିପାଟୀରୁ ଏହା ଏକ ମଣ୍ଡପ ପରି ଦିଶେ । ପ୍ରାୟ ଦେଢ଼ ମନୁଷ୍ୟ ଉଚ୍ଚ ହେବ । କଶାଇ ଭାରତର ଅଧିନାୟକଙ୍କ ଏହା କିପରି ଯୋଗ୍ୟତମ ସିଂହାସନ ପରି ବୋଧହୁଏ । ସିଂହାସନ ମଧ୍ୟରେ ଅଛି ଏକ ସୁବର୍ଣ୍ଣ ଆସନରେ ସମ୍ରାଟ ଉପବେଶନ କରନ୍ତି । ପୃଷ୍ଠଭାଗରେ ଥିବା କାନ୍ଥ କଳା ଓ ଧଳା ମର୍ମର ପ୍ରସ୍ତରରେ ନିର୍ମିତ ହୋଇଅଛି । ପୁଣି ସେଥିରେ ନାନା ବିଚିତ୍ର କାରୁକାର୍ଯ୍ୟ ହୋଇଅଛି । ଫୁଲ, ଫଳ, ପକ୍ଷୀ ପ୍ରଭୃତି ବିବିଧ ଚିତ୍ର ଏହି ମର୍ମର ପଥରରେ ଖୋଦିତ ହୋଇଅଛି ।

ଖୋଦନ କିମ୍ବା ଏଡ଼େ ସୂକ୍ଷ୍ମ ଯେ ଦର୍ଶକମାନେ କେବଳ ଏ'ସବୁ ବସ୍ତୁଙ୍କର ଉପରେ ବୋଧକରିବେ । ଯେଉଁ ପକ୍ଷୀ ଯେଉଁ ରଙ୍ଗର, ସେହି ରଙ୍ଗ ପ୍ରସ୍ତରରେ ତାହାର ନିର୍ମାଣ ହୋଇଅଛି । ଅର୍ଥାତ୍ ଶୁଆର ବର୍ଣ୍ଣ ସବୁଜ, ସୁତରାଂ ଶୁଆ ନିର୍ମାଣ କରାଯାଇଅଛି ସେହି ସବୁଜ ବର୍ଣ୍ଣ—ପଥରରେ ପୁଣି ଅଣ୍ଟା ଲାଲପଥରରେ । କଥିତ ହୁଏ, ଏହା ସାହାଜାହାନଙ୍କ ପ୍ରିୟପାତ୍ର ଅଷ୍ଟିନ୍ ଡ ବୋର୍ଡିଓ(Austin de Bordeanx)ଙ୍କ ହସ୍ତ ନୈପୁଣ୍ୟ । ଅଷ୍ଟିନ୍ ଜଣେ ଇଟାଲିଦେଶୀୟ ଶିଳ୍ପୀ । ଅନେକ ଲୋକ କହନ୍ତି ଏହା ଅଷ୍ଟିନ୍‌ଙ୍କ ହସ୍ତକୃତ ନୁହେ, ବରଂ ପରବର୍ତ୍ତୀ କାରିଗରମାନେ ଏହା ନିର୍ମାଣ କରିଥାନ୍ତି । ସମ୍ରାଟ ସାହାଜାହାନ କାରିଗର ପ୍ରିୟଥିଲେ, ସୁତରାଂ ନାନା ଦୂରଦେଶରୁ ଆସି ଏମାନେ ସମ୍ରାଟଙ୍କ ଅଧୀନତା ସ୍ୱୀକାର କରିଥିଲେ ।

ସିଂହାସନ ପୃଷ୍ଠ ଭାଗର ଯେଉଁ ଶିଳ୍ପ ତଥା ଉଲ୍ଲେଖ କରାଗଲା, ତାହାକୁ ଇଂରେଜରେ ' Patria Doria work', କହନ୍ତି । ଏହି ଚିତ୍ରର କାରିଗରୀ ଜଗତରେ ନିତାନ୍ତ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଇଂରେଜମାନଙ୍କ ଦିଲ୍ଲୀ ଅଧିକାର ପରେ କପ୍ତାନ ଜୋନସ (Captain Jones) ନାମକ ଜଣେ ଇଂରେଜ ଏହି ଶିଳ୍ପ ବୈଭବରେ ବିମୋହିତ ହୋଇ ସ୍ୱଦେଶ-ବାସୀଙ୍କୁ ଏହା ଦେଖାଇବା ସକାଶେ କେତେଖଣ୍ଡ ପଥର କାଟିକରି ନେଇଥିଲେ । ମାତ୍ର ସୁଣଛାପ୍ତ ଲର୍ଡ କର୍ଜନ ତାହା ପୁଣି ବିଲାତରୁ ଅଣାଇ ଯଥାସ୍ଥାନରେ ତାହା ସ୍ଥାପନ କରି ଅଛନ୍ତି । ବିଲାତରୁ

ସମସ୍ତ ପଥର ଯେଉଁଠାଇ ଥଣିବା ପରେ ମଧ ଅନ୍ୟ ଖଣ୍ଡେ ଅଛିବ ରହିଲା । କର୍ଜନ ସାହେବ ଏହି ଖଣ୍ଡକ ପୂର୍ତ୍ତି କରିବା ପାଇଁ ଅନେକ ଶିଳ୍ପୀମାନଙ୍କୁ ଲଗାଇଲେ, ମାତ୍ର ସେହିପରି ହେଲା ନାହିଁ । ଏବେ ମଧ୍ୟ ସେହି ଖଣ୍ଡକ ପୃଥକରେ ଜଣା ପଡ଼େ ।

ଏହି ସିଂହାସନର ଦୁଇ ପାର୍ଶ୍ୱରେ ଅର୍ଦ୍ଧ ଉଚ୍ଚ ଜାଗା ଅଛି । ହିନ୍ଦୁ ମନ୍ତ୍ରୀମାନେ ଏହି ଜାଗାରେ ବସନ୍ତି । ଇତିହାସରୁ ଜଣାଯାଏ ଯେ, ଯୋଧପୁର ଓ ଜୟପୁରର ନରେଶମାନେ ସମ୍ରାଟଙ୍କ ପ୍ରଧାନ ମନ୍ତ୍ରୀ ସ୍ୱରୂପ ନିଯୁକ୍ତ ରହିଥିଲେ । ବୋଧହୁଏ ସେମାନଙ୍କ ପାଇଁ ଏହି ସ୍ଥାନ ଉଦ୍ଦିଷ୍ଟ ଥିଲା । ଏହି ମର୍ମର ମଣ୍ଡପର ଗୃହ ପାଖରେ ରୂପାର ବାଡ଼ [Railings] ଥିଲା । ଏବେ ତାହାର ଚିହ୍ନ କେବଳ ଅଛି । ଏହି ସିଂହାସନର ପରେ ଗୋଟିଏ କୋଠରୀ ଅଛି । ସେହି କୋଠରୀରେ ସମ୍ରାଟଙ୍କ ଶରୀରରକ୍ଷୀଦଳ (Body guard) ବାଦଶାହା ଦର୍ବାର କଲା ବେଳେ ବସିଥାନ୍ତି । ଏ ସମୁଦାୟ ଦର୍ଓ୍ୟାନ୍ର ଅମ ତଳେ 'ଦପ୍ତର ଖାନା' (Record Office) ଥିଲା ।

——:o:——

## ୪—ଭାଦନ

ତତ୍ପରେ ଦର୍ଶକମାନେ ଏହି ନାମରେ ଏକ ସୁନ୍ଦର ମର୍ମର ମଣ୍ଡପକୁ ଯିବାକୁ ହେବ । ଏହାର ନାମ ଭାଦନ ଅର୍ଥାତ ଭଦ୍ରମାସ । ଏହି ମଣ୍ଡପର ପଛରେ ଯମୁନା ନଦୀରୁ ଅଣାଡ ଏକ ନିର୍ଝରଣୀ ବର୍ଷ ବ୍ୟାପୀ ପ୍ରତ୍ୟେକ ସମୟରେ ଏହି ମଣ୍ଡପ ଦେଇ ପ୍ରବାହିତ ହେଉ-

ଥିଲା । ଏହି ଝରଣାକୁ ସ୍ୱର୍ଗୀୟ ପ୍ରସ୍ରବଣ [Stream of Paradise] କହନ୍ତି । ବାଦଶାହା ଗ୍ରୀଷ୍ମ କାଳରେ ଏହି ଶୀତଳ ଜଳ ସ୍ରୋତରେ ବସି କ୍ରୀଡ଼ା କରନ୍ତି । ସ୍ରୋତକୁ ସୁବାସିତ କରିବା ପାଇଁ ନାନା ପ୍ରକାରର ସୁଗନ୍ଧ ଦ୍ରବ୍ୟ ଜଳରେ ଦିଆଯାଏ । ପ୍ରସ୍ରବଣର ଧାର ୪ ଫୁଟ ଉଚ୍ଚରୁ ପ୍ରପାତ ପରି ପଡ଼େ । ରାତିରେ ଏହି ପ୍ରପାତ ନିକଟରେ ଆଲୋକମାଳା ଖଞ୍ଜିତ ହେବାରୁ ଦୃଶ୍ୟ ଅତି ମନୋହର ଦିଶୁଥାଏ । ମଣ୍ଡପର ଗୃହ ପାଖରେ ଖସ ଖସ ବାଡ଼ ଦିଆ ଯାଉଥାଏ ଓ ପାଣି ଜଳ ସିଞ୍ଚାଯାଏ । ଏହି ମଣ୍ଡପ ବିଶେଷତଃ ପୁରୁଷଙ୍କ ଦ୍ୱାରା ବ୍ୟବହୃତ ହେଉଥିଲା ।

———:o:———

## ୫——ଜଲ ମହଲ

ଏହା ଚତୁଷ୍କୋଣ ପୋଖରୀ ଘଟରେ ଲାଲ ପଥରରେ ତିଆରି । ସ୍ୱର୍ଗୀୟ ପ୍ରସ୍ରବଣ (Stream of Paradise)ର ଜଳ ସବୁ ଏ ପୋଖରୀ ଭିତରକୁ ଯାଏ । ଜଳ ମହଲଟି ଠିକ ଆମ ଓଡ଼ିଶାର 'ବଉଦଣ୍ଡି' ଭଳି । ସମ୍ରାଟ ସାହାଜାହାନଙ୍କ ଜଣେ କାଶ୍ମୀର ଦେଶାଗତା ବେଗମ୍ ଥିଲେ । କାଶ୍ମୀର ଦେଶର ଶୀତଳ ଜଳବାୟୁରେ ସେ ବଢ଼ିଥିବାରୁ ଦିଲ୍ଲୀର ଉଷ୍ଣ ଜଳବାୟୁ ସହ୍ୟ କରି ପାରିଲେ ନାହିଁ । ସମ୍ରାଟ କାଶ୍ମୀର ପ୍ରିୟାଙ୍କ ଏହି କଷ୍ଟ ନିବାରଣ ପାଇଁ 'ଜଲମହଲ୍' ନିର୍ମାଣ କରାଇ ଥିଲେ । ଏହି ମହଲ ଭିତର ସୁନ୍ଦର ସୂକ୍ଷ୍ମ ଭାଙ୍ଗ କାର୍ଯ୍ୟରେ ପରିପୂର୍ଣ୍ଣ । ଜଳକୁ ଘେରି ମହଲ ନିର୍ମାଣ ହୋଇଅଛି । ଏହି ମହଲ

ନିର୍ମାଣରେ ସମ୍ରାଟଙ୍କର ଅନ୍ୟ ଏକ ଉଦ୍ଦେଶ୍ୟ ମଧ୍ୟ ଥିଲା । କାଶ୍ମୀର ଦେଶ ଜଳ ପ୍ରଧାନ ସ୍ଥାନ ହେତୁ ନୌକାମାନଙ୍କରେ ଗୃହ ଥାଇ ସେହିଁରେ ଲୋକେ ବାସ କରନ୍ତି । ଏ ଗୃହଟି ସେହି ନୌକା ଗୃହର [Boat House] ପ୍ରତିମୂର୍ତ୍ତି । ପ୍ରାଣ ପ୍ରିୟାଙ୍କୁ ସମସ୍ତ କାଶ୍ମୀର ଦେଶର ସୁଖ ସ୍ୱାଚ୍ଛନ୍ଦ୍ୟରେ ରଖିବା ପାଇଁ ବାଦଶା ଇଚ୍ଛା କରି ବୋଧହୁଏ ଏହିପରି ଅଭିନବ ରହସ୍ୟମୟ ଜଳ ପ୍ରାସାଦ ନିର୍ମାଣ କଲେ । ଏହି ପୋଖରୀ ଚାରି ପାଖରେ ଦୂର୍ ଫୁଟ ଉଚ୍ଚ ପାଚେରୀ ଏବେ ସୁଦ୍ଧା ଅଛି । କଥିତ ହୁଏ, ଏହି କାନ୍ଥ ଉପରେ ଏକ ରୂପାର ବାଡ଼ ଦିଆ ଯାଇଥିଲା, ପୁଣି ଏହା ବିବିଧ ପୁଷ୍ପଲତା ଦ୍ୱାରା ଆବୃତ ହୋଇଥିଲା । ପୁଷ୍କରିଣୀର ବାହ୍ୟ ଶୀ ବର୍ଦ୍ଧନ କରିବା ଉଦ୍ଦେଶ୍ୟରେ ବାଦଶା ଏହି ପ୍ରାଚୀର ଓ ପୁଷ୍ପଲତାର ଆୟୋଜନ କରିଥିଲେ । ଏହାର ଉଦ୍ଦେଶ୍ୟ ଯେ ଅଭ୍ୟନ୍ତରକୁ ବାହାରରୁ ଯେପରି କେହି ନଦେଖେ ।

——:o:——

## ୭—ସାବନ୍

ଏହା ପରେ ଦର୍ଶକ ସାବନ ବା ଶ୍ରାବଣ ମଣ୍ଡପକୁ ଯିବାକୁ ହେବ । 'ସାବନ-ମଣ୍ଡପ' 'ଛୋଟ' ମଣ୍ଡପ ପର ମର୍ମର ପ୍ରସ୍ତରରେ ନିର୍ମିତ ହୋଇଅଛି । ତାହା ଏହା ସ୍ତ୍ରୀମାନଙ୍କ ପାଇଁ ନିର୍ମିତ । ମହଲ ମଧ୍ୟ ଦେଶରେ ଗୋଟିଏ ଛୋଟ କୁଣ୍ଡ ଅଛି । ଏହାର ପାଖରୁ ଜଳ-ଧାରମାନ ପ୍ରପାତ ପରି ଏହି କୁଣ୍ଡ ଭିତରେ ପଡ଼ନ୍ତି । ଉପର କଥିତ (Stream of paradise) ସ୍ୱର୍ଗୀୟ ପ୍ରସ୍ରବଣ ନଦନରୁ ଆସି

ଚଲମହଲ ଦେଇ ସାବନ ମଧ୍ୟ ଭେଦ କରି ବହିଯାଏ । ଏଠାରେ ମଧ୍ୟ ନାନାରଙ୍ଗର ଆଲୁଅ ଲଗାଯାଉଥାଏ । ଏହି ଜଳସ୍ରୋତ ସିଧା ଦେଓ୍ୱାନଖାସ ଓ ହମମା ଦେଇ କଷ୍ଟା ବାହାରକୁ ଯାଏ । ଏହାର ସବିଶେଷ ବର୍ଣ୍ଣନ ପରେ ଦିଆଯିବ ।

——:O:——

## ୭--ମୋତି ମସଜିଦ

ଜଗତରେ ଯେତେ ମସଜିଦ ଅଛି, ମୋତି ମସଜିଦ ଆକାରରେ ଶ୍ରେଷ୍ଠ ନହେଲେ ସୁଦ୍ଧା ସବୁଠାରୁ ସୁନ୍ଦର । ସାହାଜାହାନ ଉପାସନା ନିମିତ୍ତ ଦିଲ୍ଲୀ ନଗରୀର ବୃହତ୍ତମ ମସଜିଦ 'ଜୁମ୍ମା ମସଜିଦ'କୁ ଯାନ୍ତି, କିନ୍ତୁ ଅରଙ୍ଗଜେବ ଏହି ସୁନ୍ଦର ମସଜିଦରେ ଉପାସନା କରନ୍ତି । ନିଜ ପରିବାର ଲୋକଙ୍କ ଉପାସନା ପାଇଁ ଅରଙ୍ଗଜେବ ଏହି ମସଜିଦ ନିର୍ମାଣ କରିଥିଲେ । ଇଂରେଜମାନେ ଏହି ମସଜିଦକୁ Pearl mosque ବୋଲି କହନ୍ତି । ଏହା ଖ୍ରୀ ୧୬୬୨ ରେ ନିର୍ମାଣ ହୋଇଥିଲା । ଏଥିରେ ସମୁଦାୟ ୪ ଗୋଟି ଡୋମ ଓ ୮ ଗୋଟି ମିନାରେଟ ଅଛି । ଶୁକ୍ଳ ମର୍ମର ପ୍ରସ୍ତରରେ ଏହା ତିଆରି ହୋଇଅଛି ।

ଇତିହାସରୁ ଜଣାଯାଏ, ମୋଗଲ ସାମ୍ରାଜ୍ୟ ପରବର୍ତ୍ତୀ ବିଜେତାଗଣ ଏହି ମସଜିଦ ଭାଙ୍ଗି ଦେଇଥିଲେ । କିନ୍ତୁ ବ୍ରିଟିଶ ସରକାରରେ ଇଂରେଜମାନେ ପୁଣି ଏହାର ଜୀର୍ଣ୍ଣ ସଂସ୍କାର ଖ୍ରୀ୧୮୫୭ରେ କରିଥିଲେ । ଦର୍ଶକମାନେ ଏହି ଭିତରକୁ ଗଲେ ଜୋତା ଉପରେ

ପ୍ରତି ଜୁପଣ୍ଟଣ ଚୋବା ପିନ୍ଧିବାକୁ ହୁଏ । ମସଜିଦ ଓ ହିନ୍ଦୁ ଉପାସନା ସ୍ଥଳ ଯୋତା ପିନ୍ଧି ଯିବା ଦୋଷାବହ, ସୁତରାଂ ଦେଶଗତ ଅନୁସାରେ 'ଜୁପଣ୍ଟଣ' ଚୋବା ପିନ୍ଧିବା ବିଧାନ ଅଛି ।

—:୦:—

## ୮—ହମାମ୍

ଏହାର ଅର୍ଥ ଉଷ୍ଣ ଓ ଶୀତଳସ୍ନାନ । [Baths Cold & hot] ବଢ଼ୀ ଚୌକ ବର୍ଣ୍ଣନୀୟ ସ୍ଥଳମାନଙ୍କ ମଧ୍ୟରେ ଏ ଗୃହକ ସର୍ବୋତ୍କୃଷ୍ଟ । ପ୍ରଥମେ ଶୀତଳ ସ୍ନାନ ଘରମାନଙ୍କର ବର୍ଣ୍ଣନା କରି ଯାଉଅଛି । ଏବେ ସୁଦ୍ଧା ଏ ଘରମାନଙ୍କରେ ପ୍ରବେଶ କଲେ ଦେହ ଶୀତଳ ବୋଧହୁଏ, । ଯେଉଁ ସମୟରେ ଏହି ଗୃହ ନିର୍ମାଣ କରି ଯାଇଥିଲା ସେହି ସମୟରେ ଜଳ-କଳ ଅବିଷ୍କୃତ ହୋଇ ନଥିଲା ସତ, ତଥାପି, ବ୍ୟସନ ପ୍ରିୟ ବାଦଶାହମାନେ ବଡ଼ ବଡ଼ ଧରଣରେ ଜଳ ସ୍ରୋତ ଏହି ଘରମାନଙ୍କୁ ଅଣିବା ଉପାୟ କରିଥିଲେ । ପ୍ରଥମ କୋଠରୀରେ ଗୋଟିଏ କୁଣ୍ଡ ଓ ତା ପାଖ କୋଠରୀରେ କାରୁ-କାର୍ଯ୍ୟ ବେଷ୍ଟିତ ଗୋଟିଏ ଖାଲ ପୀଢ଼ା ଅଛି । ସ୍ୱର୍ଗୀୟ ପ୍ରସ୍ରବଣ ବା [Stream of paradise]ରୁ ଜଳ ସ୍ରୋତ ଆସି ଏହି କୁଣ୍ଡ ଉପରେ ପଡ଼େ । ଖାଲମାନଙ୍କରେ ପଦ୍ମ ଫୁଲ, ଗୋଲାପ ଇତ୍ୟାଦି ସୁଗନ୍ଧ ପୁଷ୍ପ ପାଖୁଡ଼ା ଅତର ଦିଆଯାଏ । ପୂର୍ବେ ଘରର କାନ୍ଥମାନଙ୍କରେ ନବରତ୍ନ ଖଚିତ ହୋଇ ବାଦଶାହାଙ୍କ ଅଦ୍ଭୁତ ପୂର୍ବ ବୈଭବ ବିଳାସର ପରିଚୟ ଦେଉଥିଲା ।

ଏବେ ସେସବୁ କିଛି ନାହିଁ । ଉକ୍ତ ଖଚିତ ହେବା ସ୍ଥଳମାନ ଏବେ ଖାଲି ଖାଲି ହୋଇ ରହିଅଛି । ତାହାମାନ ବଡସ ଦ୍ୱାର ଧାର୍ଦ୍ଦିରେ ଏବେ ସୁଦ୍ଧା ମୋଗଲ ସମ୍ରାଟଙ୍କ ଶିଳ୍ପ ନିପୁଣତା ପରିଚୟ ଦେଉଅଛି । କଥିତ ଅଛି, ଏହି ସ୍ନାନ ମନ୍ଦିରର କବାଟ ରୂପାରେ ନିର୍ମିତ ହୋଇ-ଥିଲା । ଏବେ ସେସବୁ କିଛିନାହିଁ । ସ୍ନାନ ମନ୍ଦିରରେ ଗୋଟିଏ ଆସନ ଥିବା ଆମ୍ଭେମାନେ ଦେଖିଲୁ । ଆସନଟି ଶ୍ୱେତ-ମର୍ମର ପ୍ରସ୍ତ-ରରେ ନିର୍ମିତ ହୋଇଅଛି । ଗୋଟିଏ ହାଡନାଳୀ ପଥ ଏହି ଆସନ ନିର୍ମିତ ହୋଇଅଛି । ସମ୍ରାଟ ସ୍ନାନପରେ ଏହି ଆସନରେ ବସି ଉପାସନା କରନ୍ତି ।

———:0:———

## (ଖ) ହମାସ୍ (ଉଷ୍ଣସ୍ନାନ)

ଉଷ୍ଣସ୍ନାନ ମନ୍ଦିର ମଧ୍ୟ ଦିବ୍ୟ କାରୁକାର୍ଯ୍ୟରେ ନିର୍ମିତ ହୋଇ ଅଛି । ଶୀତଳ ସ୍ନାନ ମନ୍ଦିର ପରି ଏହି ସ୍ନାନ ମନ୍ଦିରରେ ମଧ୍ୟ ନବରତ୍ନ ଖଚିତ ହୋଇଥିବା ଶୁଣାଯାଏ । ଗୋଟିଏ ବିଚିତ୍ର ଅଯୋ-ଜନ ଏହି ସ୍ନାନ ମନ୍ଦିରରେ ଅଦ୍ୟାପି ଅଛି । ଗୋଟିଏ ଚତୁଷ୍କୋଣ ପଥର ଖଣ୍ଡ ବିବିଧ କାରୁକାର୍ଯ୍ୟ ବିଶିଷ୍ଟ ହୋଇଅଛି । ଏହାର ଚତୁଃପାଶରେ ୧/୨ ଇଞ୍ଚର ଏକଫାଙ୍କ ଦେଖାଯାଏ । ଏହି ପଥରଟି ଏକପ୍ରକାର ଶୂନ୍ୟରେ ରହିଛି କହିଲେ ଚଳେ, କାରଣ ଏହି ଫାଙ୍କ ଦେଇ ବାଷ୍ପ ବାହାରକୁ ବାହାରେ । ବାଦଶାହା ଏହାର ମଧ୍ୟଦେଶରେ ବସି ସ୍ନାନ କରନ୍ତି । କଥିତ ଅଛି, ଏହି ପଥରରେ ପୂର୍ବେ ନବରତ୍ନ

ଖଚିତ ଥିଲା । ଏବେ ସେ ସବୁ ନାହିଁ, କିନ୍ତୁ ଖଚିତ ନିବାରିବାର ସ୍ଥାନମାନ ସୁସ୍ପଷ୍ଟ ଦେଖାଯାଉ ଅଛି । ଆଧୁନିକ ତୁର୍କୀସ୍ଥ ସ୍ନାନ (Turkish Bath) ପରି ଏହି ସ୍ନାନର ଆୟୋଜନ ହୋଇଥିଲା । ସ୍ନାନ କୋଠରିର ଗୋଟିଏ ଘରରେ ଏକ ବିଚିତ୍ରଢଙ୍ଗର ଚୁଲ୍ଲି ଅଛି । ବାହାରକୁ ତାହା ବିଶେଷ କରି ଦେଖାଯାଏ ନାହିଁ । କିନ୍ତୁ ନିମ୍ନରୁ ବାଷ୍ପଦିଏ । ଏହି ଚୁଲ୍ଲିରେ ୧୨୫ ମହଣ କାଠ ଜଳାହେଲେ ଥରେ ମାତ୍ର ବାଦଶାହାଙ୍କର ସ୍ନାନହୋଇ ପାରୁଥିଲା । କେତେଲୋକ କହନ୍ତି, ଏକ ବିଚିତ୍ର ଧରଣର ବଡ ଦ୍ୱାରା ବାଷ୍ପ ବାହାର କରାଯାଉ ଥିଲା । ଏହାର Stove ପରି ଆକାରଥିଲା । ୧୨୫ ମହଣ କାଠଜଳାହେବା ଦ୍ୱାରା ଯେତିକି ଅଗ୍ନେୟ ଉତ୍ତାପ ସମ୍ଭବପର, ସେତିକିଶକ୍ତି ଏହି ବିଚିତ୍ର ବଡ ପ୍ରଦାନ କରି ପାରୁଥିଲା ।

ସ୍ନାନାଗାରର ନିର୍ମାଣ କାର୍ଯ୍ୟ ବିବିଧ ସୂକ୍ଷ୍ମ କାରିଗର ଦ୍ୱାରା ବଡ଼ସୁନ୍ଦର ଦେଖାଯାଏ । ଗୃହତଳ [Floor] ଅତିସୁନ୍ଦର ଜାଲି-କାର୍ଯ୍ୟରେ ନିର୍ମିତ ହୋଇଅଛି । ସମସ୍ତ ତଳ ସୁନ୍ଦର ମର୍ମର ପଥରରେ କେବଳ ନିର୍ମାଣ ହୋଇଥିଲା ।

ସ୍ନାନାଗାର ନିକଟରେ ଆଉ ଏକଗୃହ ଅଛି । ବାଦଶାହା ସ୍ନାନପରେ ଏହିଗୃହରେ ପୋଷାକ ଲଗାଉଥିଲେ । ଏହି କୋଠରି ମଧ୍ୟଅନ୍ୟାନ୍ୟ ଗୃହମାନଙ୍କପରି ସୁନ୍ଦର ଓ ବିଚିତ୍ର କାରୁ କାର୍ଯ୍ୟବିଶିଷ୍ଟ । ଅନ୍ଦରମହଲ ସମ୍ବନ୍ଧୀୟ ଏହା ପାଖରେ ଛୋଟ କମରା ସବୁ ଅଛି । କିଛିବାଟ ଏହିଦିଗ କୋଠରିମାନ ପୃଷ୍ଠପାର୍ଶ୍ୱ କଣ୍ଠା·କାନ୍ଥଉପରେ ନିର୍ମିତ ହୋଇଅଛି ଓ ଯମୁନା ନଦୀ ପଟରୁ ବାହାରିକାନ୍ଥ ନାହିଁ, କାରଣ

ଯମୁନା ନଦୀହିଁ ଏହି ପାର୍ଶ୍ୱର ପ୍ରାକୃତିକ ବାରଣ ରୂପେ ବାହ୍ୟ –ରାଜ୍ୟରୁ ବର୍ଜିତ କରିଥିଲା । ନଦୀ ଅରପାରରେ ଉଚ୍ଚ ସ୍ତୂପାବଳୀ ଦ୍ୱାରା ବାହ୍ୟବାରଣ ଅଧିକ ଦୃଢ଼ତର ହୋଇଥିଲା । ସୁତରାଂ ଶତ୍ରୁ-ଆକ୍ରମଣ ଭୟ ଆଦୌ ନଥିଲା । ଯମୁନା ନଦୀ ବର୍ତ୍ତମାନ ଏହି ଦୁର୍ଗର କିଛିଦୂରରେ ପ୍ରବାହିତ ହେଉଅଛି । ସେଥିଯୋଗୁଁ ଦୁର୍ଗ ଓ ନଦୀ ମଧ୍ୟରେ ଏକ ପ୍ରାନ୍ତର ରହିଅଛି । ଏହି ପ୍ରାନ୍ତର ବର୍ତ୍ତମାନ ଯୁଦ୍ଧ ଟାଙ୍କି (War tank)ମାନଙ୍କର ସ୍ୱାସ୍ଥ୍ୟସ୍ଥଳ ହୋଇଅଛି । ଦୁର୍ଗ ଏହି ପାର୍ଶ୍ୱସ୍ଥମାନ ସବୁ ନଦୀପାଖକୁ ମୁହାଁଇ ନିର୍ମିତ ହୋଇଅଛି ।

## ୧—ଶିଶ୍ ମହଲ

ଏହିନାମରେ ଏକ ସୁନ୍ଦର ଘର ବର୍ତ୍ତମାନ ଦେଖିବାକୁ ହେବ । ଶିଶ୍ ମହଲ ବେଗମ୍ ମାନଙ୍କ ସିଂହାର—ଗୃହ । ଏହି ସୁନ୍ଦର ଗୃହର ଛାତ କାନ୍ଥ ଇତ୍ୟାଦି ସମସ୍ତ ବିଭାଗ ଛୋଟ୍ ୨ କାଚରେ ନିର୍ମିତ ହୋଇଅଛି । କାଚ ଗୁଡ଼ିକ କିଛି ସାଧାରଣ ଭାବରେ ବସାଯାଇ ନାହିଁ, କିନ୍ତୁ ବିଚିତ୍ର ଚିତ୍ର କାର୍ଯ୍ୟରେ ପୂର୍ଣ୍ଣହୋଇ ବିଚିତ୍ର ଭାବରେ ଖଚିତ ହୋଇଅଛି । ଏହି ଗୃହରେ ଗୋଟିଏ ମାତ୍ର ବତି ଜଳଲେ, ସହସ୍ର ବତି ଜଳିଲା ପରି ଦିଶେ । ବେଗମ୍ ମାନଙ୍କ ଏହି ପ୍ରସାଧନ ମନ୍ଦିର ତତ୍କାଳୀନ ବ୍ୟସନ ଉପାଦାନରେ ମଣ୍ଡିତ ହୋଇଥିଲା । କାଚରେ ନିର୍ମିତ ହେବା ଯୋଗୁଁ ଏହାର ନାମ ଶିଶ୍ ମହଲ ହୋଇଅଛି ।

# ଦିୱାନି ଖାସ୍

କିଲ୍ଲାର ସମସ୍ତ ଗୃହ ସୁନ୍ଦର ହୋଇଥିଲେ ସୁଦ୍ଧା ଦିୱାନୀଖାସ୍ ଅପେକ୍ଷାକୃତ ମନୋହର ଓ ବିଚିତ୍ର । ବର୍ତ୍ତମାନ ମଧ୍ୟ ଏହି ନିତ୍ୟ ନୂତନ ମହଲ ପୂର୍ବପରି ରହିଅଛି । ଦୁର୍ଗ ମଧ୍ୟସ୍ଥ ସମସ୍ତ ଗୃହ ଏବେ ପ୍ରାୟ ଶ୍ରୀହୀନ ଓ ନିଷ୍ପ୍ରଭ ହୋଇ ଅଛନ୍ତି । କିନ୍ତୁ ଦିୱାନୀଖାସ୍ ପୂର୍ବପରି ରହିଅଛି । ପୂର୍ବ କଥିତ ସ୍ୱର୍ଗୀୟ ପ୍ରସ୍ରବଣ ବା Stream of Paradise ଏହି ଦେୱାନିଖାସ୍ ନିମ୍ନରେ ବହି ଯାଉଥିଲା । ଏବେ ନାଳ ମଧ୍ୟ ଅଛି, ଯେଉଁ ନାଳରେ ପାଣି ଯାଉଥିଲା, ସେଥିରେ ରୂପା ବନ୍ଧା ଯାଇଥିଲା. ପୁଣି ସୁନା ଝଡଥିଲା । ଏହି ଗୃହରେ ବାଦଶାହଙ୍କର ଶ୍ରେଷ୍ଠ ଦରବାରମାନ ଅନୁଷ୍ଠିତ ହେଉଥିଲା । କୌଣସି ବିଦେଶାଗତ ବିଶିଷ୍ଟ ଅଗନ୍ତୁକମାନେ ବାଦଶାହଙ୍କୁ ଏହି ମନୋହର ଓ ସୁସଜ୍ଜିତ ଗୃହରେ ଦର୍ଶନ କରନ୍ତି । ଏହି ମଣ୍ଡପର ସମୁଦାୟ ତୋରଣମାନ ଅକ୍ଷୁଣ୍ଣ ରହିଅଛି ।

ଦେୱାନୀଖାସ୍ ମଣ୍ଡପର ନିମ୍ନଦେଶରୁ ଉପର ପର୍ଯ୍ୟନ୍ତ ସୁନାରେ ତ୍ୱାଲ କାର୍ଯ୍ୟମାନ ହୋଇଥିଲା । ଏବେ ସେ ସମସ୍ତ ନାହିଁ, କେବଳ ସଦାଶୟ ସରକାର ସମୟେ ସମୟେ ସୁନାଲି ରଙ୍ଗ [Gold paint] କରଥାନ୍ତି । ସାହାଜାନ୍ ସମ୍ରାଟ ଥିଲାବେଳେ, ଏହି ମଣ୍ଡପ—ଛାତ ସୁନାରେ ନିର୍ମିତ ହୋଇଥିଲା । କ୍ରମେ ମୋଗଲ ପ୍ରଭୁତ୍ୱ ଅସ୍ତମିତ ହେବା କ୍ରମରେ ରୂପା, ତାପରେ ପିତ୍ତଳ, ବର୍ତ୍ତମାନ କାଠର ଛାତ ହୋଇ ଅଛି । କିନ୍ତୁ ସୁନାଲି ରଙ୍ଗ ଦ୍ୱାରା ଛାତର ଶୋଭା ବରାବର ଅକ୍ଷୁଣ୍ଣ ଥିଲା ପରି ବୋଧହୁଏ । ମଣ୍ଡପର ତାତ୍କାଳୀନ ଶୋଭା ଓ ଶିଳ୍ପ – କୁଶଳତା

ତଦାନୀନ୍ତନ ଲୋକ—ସମାଜର ଅତିବ ପ୍ରିୟ ହୋଇଥିଲା । ସ୍ୱୟଂ ସମ୍ରାଟ ଏଥିରେ ମୁଗ୍ଧ ହେଉଥିଲେ । ମଣ୍ଡପ ମଧ୍ୟଦେଶର ଚତୁଃପାର୍ଶ୍ୱରେ ଉର୍ଦ୍ଦୁରେ ଲେଖାଅଛି—"ଦୁନିଆରେ ଯଦି ସ୍ୱର୍ଗ ଅଛି, ତାହା ଏହି, ତାହା ଏହି, ତାହା ଏହି," (If there is a heaven on earth,it is this, it is this, it is this)। ଏହି ମଣ୍ଡପର ନାମ ଘରୋଇ ଦର୍ବାର ଭବନ (Private audiance Hall)। ମଣ୍ଡପର ପୃଷ୍ଠଭାଗ କାନ୍ଥ ବିଚିତ୍ର କାରୁ-କାର୍ଯ୍ୟରେ ମଣ୍ଡିତ ହୋଇଥିଲା । ଯମୁନା ନଦୀ ଏହାର ଅତି ନିକଟବର୍ତ୍ତୀ ।

ମଣ୍ଡପର ପଛ କାନ୍ଥକୁ ଲାଗି ଥିଲେ ଭୁବନ ବିଖ୍ୟାତ 'ମୟୂର—ସିଂହାସନ" ପ୍ରତିଷ୍ଠିତ ଥିଲା । ତିନିଫୁଟ ଉଚ୍ଚହୋଇ ଗୋଟିଏ ପୀଠ ବର୍ତ୍ତମାନ ଅଛି । ସେହି ପୀଠରେ ସିଂହାସନ ସ୍ଥାପିତ ହୋଇଥିଲା । ସିଂହାସନ ପୀଠ ଦେଖି ସିଂହାସନ ଦର୍ଶନ ପାଇଁ ମନ ବ୍ୟାକୁଳ ହେଲା । କିନ୍ତୁ ସ୍ଥୂଳ ଚକ୍ଷୁରେ ତାହା ଦେଖି ପାରିଲି ନାହିଁ । ମୁସଲମାନ କୃତିହି ବୋଲି ଭାରତୀୟ ହିନ୍ଦୁର ତାହା କଦାଚ ଘୃଣ୍ୟର ପଦାର୍ଥ ନୁହେ । ଭାରତ—ଜାତୀୟ ଦୃଷ୍ଟିରୁ ତାହା ଆମ୍ଭମାନଙ୍କ ଅମୂଲ୍ୟମଣି । ଯେଉଁ ପଦାର୍ଥ ଅତୁଳନୀୟ, ତାହା ଜାତୀୟତା ପର ସଙ୍କୀର୍ଣ୍ଣ ମନୋବୃତ୍ତି ଦ୍ୱାରା ମପାଯାଏ ନାହିଁ । ବଡ଼ ଦୁଃଖର କଥା, ଏହି ସିଂହାସନ ବର୍ତ୍ତମାନ ପାରସ୍ୟ ଦେଶର ରାଜଧାନୀ ତେହେରାନ୍‌ରେ ପଡ଼ିଅଛି—ଗୌରବମୟ ତଦାନୀନ୍ତନ ଭାରତ ସନ୍ତାନର ବଂଶଧରମାନେ ଅଜି ତତ୍କାଳୀନ ସଭ୍ୟତା ସ୍ମରଣ କରିବା ପାଇଁ ମଧ୍ୟ ମୟୂର ସିଂହାସନ ଦେଖିପାରୁ ନାହାନ୍ତି ।

ଇତିହାସରୁ ଜଣାଯାଏ ଖ୍ରୀ ୧୮୩୯ ମେ ମାସ ୧୭ତାରିଖରେ ନାଦିର ଶା' ଦିଲ୍ଲୀ ଆସିଲା ବେଳେ ଏହି ସିଂହାସନ ପ୍ରତି ଅନୁରକ୍ତ ହେଲେ । ଅନୁରାଗ ଏତେ ପ୍ରବଳ ହେଲା ଯେ,ସେ ଏହି ଦେବ ଦୁର୍ଲ୍ଲଭ ସିଂହାସନ ନିଜ ଦେଶକୁ ନନେଇ ଛାଡିଲେ ନାହିଁ । ଏହାର ଅନୁମାନିକ ମୂଲ୍ୟ— ୨,୦୦୦,୦୦୦, ଠାରୁ ୭,୦୦୦,୦୦୦, ପାଉଣ୍ଡ ପର୍ଯ୍ୟନ୍ତ ଥିଲାପରି ବିଶେଷଜ୍ଞମାନେ ଅନୁମାନ କରନ୍ତି । ଜଗତର ଦୁର୍ଲ୍ଲଭ ରତ୍ନମାନ ସିଂହାସନରେ ଖଚିତ ହୋଇଥିଲା । ମୟୂର ଦୁଇ ଗୋଟିର ଆଖିମାନ ଅର୍ଦ୍ଧ ଗୋଲ ଦୁଇଟି ହୀରାଦ୍ୱାରା ଖଚିତ ହୋଇଥିଲା । ପ୍ରତ୍ୟେକ ହୀରାର ମୂଲ୍ୟ ପ୍ରାୟ ଟ ୫୦,୦୦୦/-ପର୍ଯ୍ୟନ୍ତ ହେବ ।

ମୟୂର ସିଂହାସନର ଏହି ପୀଠ ଦେଖିଲେ ଭାବୁକ ଦର୍ଶକମାନେ କଳ୍ପନା ପଥାରୂଢ଼ ହୋଇ ସେହି ସିଂହାସନ ଦେଖି ପାରିବେ । ଭାରତର କେତେ ପଦାର୍ଥ ଆଜି ଭାରତ ବକ୍ଷରୁ ଚାଲି ଯାଇଅଛି, ଭାବିଲେ କାହାର ହୃଦୟ କ୍ଷୁବ୍ଧ ନହେବ ? ଏହି ସୁସଜ୍ଜିତ ମଣ୍ଡପରେ ଯେତେବେଳେ ସିଂହାସନ ଥିଲା ଭାରତର ରାଜଶକ୍ତି ସେତେବେଳେ ଗୌରବ ଶ୍ରୀ—ବିଭୂଷିତା ହୋଇ ଜଗତ ଚକ୍ଷୁରେ ଦେଦୀପ୍ୟମାନ ହେଉଥିଲା ।

ଅଳ୍ପଦିନ ହେବ ସଦାଶୟ ବ୍ରିଟିଶ ସରକାର ସିଲୋନ୍ ଦେଶର ପ୍ରାଚୀନ ସିଂହାସନ ସିଲୋନ୍ ଦେଶକୁ ଫେରାଇ ଦେଇ ଅଛନ୍ତି । ଏଥିଦ୍ୱାରା ସରକାରଙ୍କ ହାର୍ଦ୍ଦିକ ଉଦାରତାର ଯଥେଷ୍ଟ ପରିଚୟ ଜଗତବାସୀ ଉପଲବ୍ଧି କରୁଅଛନ୍ତି । ପାରସ୍ୟର ଭାଗ୍ୟଧର 'ରିଜାଖାଁ ପେହଲବି' ସେହିପରି ଦୃଷ୍ଟାନ୍ତ ଦେଖାଇଲେ, ତାଙ୍କର କି ସେହି ଗୌରବ ତଥା ଉଦାରତା ଇତିହାସ ଘୋଷଣା କରନ୍ତା ନାହିଁ ?

ଉପର କଥିତ "ସ୍ୱର୍ଗୀୟ ପ୍ରସ୍ରବଣ" ଏହି ଦେୱାନୀଖାସ୍ ତଳେ ପ୍ରବାହିତ ହେଉଥିଲା । ମୋଗଲ ସମ୍ରାଟମାନଙ୍କ ଗୃହ ନିର୍ମାଣରେ ଏତିକି ବିଶେଷତ୍ୱ ଥିଲାଯେ ସେମାନେ ପ୍ରତ୍ୟେକ ଭବନରେ ଜଳ ପ୍ରବାହର ନାଳୀ ଲଗାଇଥିଲେ । ଖ୍ରୀ ୧୯୧୨ରେ ଯେଉଁ ଦରବାର ଅନୁଷ୍ଠାନ ପାଇଁ ସ୍ୱୟଂ ସମ୍ରାଟ ପଞ୍ଚମ ଜର୍ଜ୍ଜ ଦିଲ୍ଲୀ ଆଗମନ କରିଥିଲେ ସେତେବେଳେ ଏହି କକ୍ଷରେ ଉଦ୍ୟାନ—ମିଳନ (Garden party) ହୋଇଥିଲା ।

——:o:——

## ଶୟନାଗାର (କ)

ଦର୍ଶକମାନେ ଏହାପରେ ବାଦଶାହଙ୍କ ଶୟନାଗାର (Bed Room)କୁ ଯିବାକୁ ହେବ । କକ୍ଷ ମଧ୍ୟରେ ଏହା ଅନ୍ୟତମ ଦର୍ଶନୀୟ ସ୍ଥାନ, କାରଣ ବାଦଶାହାଙ୍କ ସ୍ୱ—ବ୍ୟବହୃତ ଜିନିସମାନ ଏହି କକ୍ଷରେ ରଖା ଯାଇଅଛି । ସେ ସମସ୍ତର ବିବରଣୀ ଦିଆଗଲା ।

ଗୋଟିଏ ଦ୍ୱାରକୁ ପଛକରି ଜରିର ମସ୍‌ଲିନ୍ ତକିଆ ଅଛି । ତା'ପଛରେ ଗୋଟିଏ ନାଲି ମଖମଲ ଜରିପର୍ଦ୍ଦା ଟଣା ଯାଇଅଛି । ସମସ୍ତ କକ୍ଷ ତଳେ ପାରସ୍ୟ—ଗାଲିଚା ଆଚ୍ଛାଦିତ ହୋଇଅଛି । ତକିଆ ନିକଟରେ ବାଦଶାହାଙ୍କ ଖଣ୍ଡା, ହୁକ୍କା, ଜପାମାଳି, ଛୁରି ପ୍ରଭୃତି ରଖା ଯାଇଅଛି । ଦର୍ଶକମାନେ ଏ ସମସ୍ତ ଅପ୍ରୋଜନ ଦେଖିଲେ ବୋଧ କରିବେ ଯେପରି ଅଧୁନା ବାଦଶାହାଙ୍କର ଏହା ବିଶ୍ରାମସ୍ଥଳ ପୁଣି ଯେପରି ସେହିକ୍ଷଣି ଉଠି ଅନ୍ତଃପୁରକୁ ଯାଇଛନ୍ତି । ଏହି କକ୍ଷ—କୋଣରେ ଅଳଙ୍କାରମାନ ସଜ୍ଜିତ ହୋଇ ରଖାଯାଇ ଅଛି ।

ଭାରତର ଏକଛତ୍ର ସମ୍ରାଟଙ୍କ ଏ' ସମସ୍ତ ରାଜକୀୟ ଛଡ଼ ଉପାଦାନ -ମାନ ଦେଖିଲେ ମନରେ ଏକ ବସ୍ତୁତ୍ଵ ଜାତହୁଏ । ଯେଉଁ ସମ୍ରାଟ ଦିନେ ନିଜର ଶକ୍ତି ସାମର୍ଥ୍ୟରେ ଆକୁମାରୀ ହିମାଚଳ ପର୍ଯ୍ୟନ୍ତ ନିଜର ପ୍ରଭୁତ୍ଵ ବିସ୍ତାର କରିଥିଲେ ପୁଣି ଅପରିମିତ ସଂପତ୍ତିର ଅଧିକାରୀ ହୋଇ ମର୍ତ୍ତ୍ୟରେ ସ୍ୱର୍ଗ ସୁଖ ଉପଭୋଗ କରୁଥିଲେ; ସେହି ସମ୍ରାଟ ମଧ ସାଧାରଣ ମନୁଷ୍ୟ ପରି ମୃତ୍ୟୁ ମୁଖରେ କବଳିତ ହୋଇ ଅଛନ୍ତି । ଉପଭୋଗ୍ୟ ସାମଗ୍ରୀମାନ ସବୁ ପଡ଼ି ରହିଛି, କିନ୍ତୁ ଉପଭୋଗୀ ସମ୍ରାଟ ନାହାନ୍ତି । କାଳର କି ବିଚିତ୍ର ପରିବର୍ତ୍ତନ !!

ବାଦଶାହାଙ୍କ ଏହି ଶୟନାଗାର ଐତିହାସିକମାନଙ୍କର ଏକ ତୀର୍ଥଭୂମି ପରି ବୋଧହୁଏ । ଭାରତର ତଦାନୀନ୍ତନ ରାଜନୀତିର କେନ୍ଦ୍ର ଶକ୍ତି ଏହି ପ୍ରକୋଷ୍ଠରେ ଯେପରି ଏବେସୁଦ୍ଧା ଉଜ୍ଜୀବିତ ରହିଅଛି । ଆମ୍ଭମାନଙ୍କ ଗୁଣଗ୍ରାହୀ ସରକାର ନିତ୍ୟନୂତନ ଜୀବନ ଦେଇ ମୋଗଲ ସମ୍ରାଟଙ୍କ ବ୍ୟବହୃତ ଜିନିସମାନ ସଂରକ୍ଷଣ କରି ଆସୁଅଛନ୍ତି । ଭାରତ ସରକାର ପୂଜ୍ୟପୂଜାର ବ୍ୟତିକ୍ରମ କେବେହେଲେ କରିନାହାନ୍ତି ବାଦଶାହାଙ୍କ ବ୍ୟବହୃତ ଜିନିସମାନଙ୍କୁ ଉପଯୁକ୍ତଭାବେ ରକ୍ଷଣ କରିବା ଏଥିର ଅନ୍ୟତମ ଦୃଷ୍ଟାନ୍ତ ।

ଏହି ଉପାଦାନ ସବୁ ସଂରକ୍ଷଣକରି ଭାରତୀୟ ପ୍ରଜାଙ୍କୁ ପ୍ରତି ମୁହୂର୍ତ୍ତରେ ଦେଖାଇବା ସରକାରଙ୍କ ଇଚ୍ଛା । ସୁତରାଂ ଏହା ଯେପରି ଭଗ୍ନନଷ୍ଟ ନହୁଏ ଅଥଚ ସମସ୍ତେ ଦେଖି ଅତୀତ ସଭ୍ୟତାରେ ଉଦ୍- ବୋଧିତ ହୁଅନ୍ତି; ସରକାର ସେହିପରି ଯତ୍ନ ନେଇଅଛନ୍ତି । ପ୍ରକୋଷ୍ଠର ଦ୍ୱାରରେ କାଚମାନ ଦିଆ ଯାଇଅଛି । ଲୋକେ ସ୍ୱଚ୍ଛନ୍ଦରେ ଦେଖି

ପାରୁ ଅଛନ୍ତି । ଏହି ଶୟନ—କକ୍ଷରେ ପୂର୍ବେ ରୂପା କବାଟ ଲାଗିଥିଲା । ଏବେ କିନ୍ତୁ ତାହା ନାହିଁ । ସରକାର ଏହି ରୂପାକବାଟର ପ୍ରତିରୂପ ଦୁଇଗୋଟି ତମ୍ବାର କବାଟ ଲଗାଇ ଅଛନ୍ତି । ଦୁଇଗୋଟି କବାଟରେ ଦୁଇଗୋଟି ଦାଉମୁଣ୍ଡ ଅଛି । ଦର୍ଶକ ବାହୁଲ୍ୟରୁ କାଳେ କକ୍ଷ ଉପରେ ବାଧା ପଡ଼ିପାରେ, ଏହି ଆଶଙ୍କାରେ ଲୁହାର ବାଡ଼ ବାରଣ ହୋଇ ଅନ୍ୟ ଡିନିପାଖ ବନ୍ଦ ରହିଅଛି ।

———:୦:———

## ମନ୍ତ୍ରଣାଗାର (ଖ)

ଶୟନାଗାରକୁ ଲାଗି ମନ୍ତ୍ରଣାଗାର ଅବସ୍ଥିତ ହୋଇଅଛି । ଠିକ୍ ଶୟନାଗାର ପରି ଆକାରରେ ଏହା କ୍ଷୁଦ୍ର । ଏହି ସୁସଜ୍ଜିତ—କକ୍ଷରେ ଭାରତ ସମ୍ରାଟ ମନ୍ତ୍ରୀମାନଙ୍କ ସହ ବିଚାର କରନ୍ତି । ଶୟନାଗାର ପରି ଏହି ମନ୍ତ୍ରଣା କକ୍ଷ ଦ୍ୱାରରେ ମଧ୍ୟ ଗୋଟିଏ ସବୁଜ ବର୍ଣ୍ଣ ମଖମଲ ପର୍ଦ୍ଦା ପଡ଼ିଅଛି । ତା' ପାଖରେ ଜରି ମସଲନ୍ ତକିଆ ପଡ଼ିଅଛି । ତକିଆ ଉପରେ ଜରି କାର୍ଯ୍ୟରେ ପୂର୍ଣ୍ଣ । ଗୃହ ସମୁଦାୟ ଉତ୍ତମ କାଶ୍ମୀର ଗାଲିଚାରେ ଆଚ୍ଛାଦିତ ହୋଇଅଛି । କକ୍ଷର ମଧ୍ୟଦେଶରେ ଭାରତ ସମ୍ରାଟଙ୍କ ଆସନ ପଡ଼ିଅଛି । ଦୁଇପାର୍ଶ୍ୱରେ ମନ୍ତ୍ରୀମାନଙ୍କ ପାଇଁ ଅପେକ୍ଷାକୃତ ନ୍ୟୂନ ଆସନ ପଡ଼ିଅଛି । ଏହା ମଧ୍ୟ ମଖମଲରେ ତିଆରି । ଏଥିରେ ସମ୍ରାଟଙ୍କ ପ୍ରଧାନ ଓମ୍ରାଓମାନେ ବସନ୍ତି । ସମ୍ରାଟଙ୍କ ଆସନର ଦକ୍ଷିଣ ପାର୍ଶ୍ୱରେ ପରି ଗୋଟିଏ ତଲବାର, ଗୋଟିଏ ରୂପାର ଅଶାବାଡ଼ି, ଗୋଟିଏ ଦର୍ପଣ, ତାଙ୍କ ତକିଆ ଲାଗି କାଶ୍ମୀରଶାଲ୍, ବାମର ଦୁଇ ପାର୍ଶ୍ୱରେ

ହୁଇଟି ଅଲଟ୍ ପ୍ରଭୃତି ଜନସମାନ ଅଛି । ଉପର କଥିତ ଶଯ୍ୟାଗାର ଓ ମନ୍ତ୍ରଣାଗାର ଅନ୍ଦର ମହଲରେ ନାହିଁ—କିନ୍ତୁ ବାହାର ରଙ୍ଗ ମହଲରେ ଅଛି । ଅଭ୍ୟନ୍ତର ଶଯ୍ୟାଗାରର ବିଶେଷ ବର୍ଣ୍ଣନ ପରେ ଦିଆଯିବ ।

——:o——

## ୧୨—ଧର୍ମ୍ମ ନ୍ୟାୟ ତରାଜୁ

## (Scale of Justice)

ଶଯ୍ୟାଗାର ଓ ମନ୍ତ୍ରଣାଗାର ବାହାରେ 'ଧର୍ମ—ତରାଜୁ' ଅନ୍ୟଏକ ଦର୍ଶନୀୟ ଦ୍ରବ୍ୟ, ଏହା ଏକ ଉତ୍କୃଷ୍ଟ ଜାଲି—ଶିଳ୍ପରେ ନିର୍ମିତ ହୋଇଅଛି । ଏହି ଜାଲି ଅର୍ଦ୍ଧ ଉପରେ [Scale of Justice] ବିଦ୍ୟମାନ; ସମସ୍ତ ଜାଲି—ଶିଳ୍ପ ମର୍ମର ପଥରରେ ନିର୍ମିତ ହୋଇଅଛି । ପୂର୍ବ କଥିତ ସ୍ୱର୍ଗୀୟ—ପ୍ରସ୍ରବଣ ଏହି ମନ୍ଦିର ଦେଇ ପ୍ରବାହିତ ହୁଏ । 'ଧର୍ମ—ତରାଜୁ'ର ଦୁଇଗୋଟି ବୈଶିଷ୍ଟ୍ୟ ଅଛି । ପ୍ରଥମ—ଏଥିରେ ଜାଲିଶିଳ୍ପ, ହିଂସ୍ର, ପ୍ରସ୍ତର ଖୋଦିତ ଚନ୍ଦ୍ର ଓ ତାରକାଗଣ ଓ ଧର୍ମ—ତରାଜୁ । ତରାଜୁ ଉପରେ ସୂର୍ଯ୍ୟ-ବିମ୍ବ ଖୋଦିତ ଅଛି । ଏହି ଖୋଦନ କାର୍ଯ୍ୟରେ ଗୋଟିଏ ବ୍ୟାପକ ମନୋବୃତ୍ତିର ପରିକଳ୍ପନା ଅଛି । ବିବିଧ ବିଳାସ ଓ ପ୍ରବୃତ୍ତି ମଧ୍ୟରେ ମନୁଷ୍ୟ ନ୍ୟାୟାନ୍ୟାୟ ବିଚାର ପାଶୋରି ଯିବା ଅସମ୍ଭବ ନୁହେଁ । ସମ୍ରାଟଙ୍କ ଭୋଗ ବିଳାସ ଓ ପ୍ରବୃତ୍ତିଠାରୁ ଅଧିକ କାହାର ଅଧିକ ଥାଇପାରେ ? ସୁତରାଂ ସ୍ୱୟଂ ସମ୍ରାଟ ଏହି ପରିବେଶ ମଧ୍ୟରେ ଥାଇ ସୁଦ୍ଧା ସର୍ବଦା ଜାଗରୂକ ଥିଲେ । ବାଦଶାହା

ପ୍ରବଦନ ଏହି ଛତ୍ରକୁ ସ୍ମରଣ କରନ୍ତୁ । "ଦେଶ, ଚନ୍ଦ୍ର, ସୂର୍ଯ୍ୟ ତାରାଗଣ ଭୂମିର ଧର୍ମାଧର୍ମ କର୍ମରକ୍ଷା ଗ୍ରହଁ ରହିଅଛନ୍ତି । ନରପେକ୍ଷ ରାଷ୍ଟ୍ର ଦ୍ୱାରା ନ୍ୟାୟ୍ୟାନ୍ୟାୟ୍ୟ ନିଷ୍ପତ୍ତିକର" ଅମ୍ବ ଶାସ୍ତ୍ରରେ ଅଛି—

"ଅଦତ୍ୟ ଚନ୍ଦ୍ରାବକଲୋ ନଲଶ୍ଚ
ଦ୍ୟୋ ଭୂମିରାପୋ ହୃଦୟମ୍ ଯମଶ୍ଚ
ଅହଶ୍ଚ ରାତ୍ରିଶ୍ଚ ଉଭେଚ୍ ସନ୍ଧେ
ଧର୍ମୋପିଜାନାନ୍ତି ନରସ୍ୟ ବୃତ୍ତିଃ

ବୋଧହୁଏ ଏହି ଶ୍ଳୋକର ଭାବ ମନରେ ସର୍ବଦା ସ୍ମରଣ ରଖିବାପାଇଁ ମୋଗଲ ସମ୍ରାଟମାନେ ଏହା ଖୋଦନ କରଥିଲେ ।

ଏହି ଦଲଟି ସେହି ବାଦଶାହା ସମୟରେ ନାନା ରତ୍ନରେ ମଣ୍ଡିତ ହୋଇଥିଲା । ଏବେ କନ୍ତୁ ସେ'ସମସ୍ତ ନାହିଁ —ଅଛି କେବଳ ମର୍ମର ଜାଲ—ପର୍ଯ୍ୟାଲେ ସ୍ନେନେଜ ଚଢ଼ ।

——:୦:——

## ୧୩ —ରଙ୍ଗମହଲ

ଏହି ନାମରେ ଗୋଟିଏ ବଡ଼ ଲମ୍ବା-ଚଉଡ଼ା ମଣ୍ଡପ ଦର୍ଶକ ମାନଙ୍କ ମନୋରଞ୍ଜନ କରେ । ପୂର୍ବୋଲ୍ଲିଖିତ ସ୍ୱର୍ଗୀୟସ୍ରସ୍ରବଣ ଏହି ମହଲ୍ ଦେଇ ମଧ୍ଯ ପ୍ରବାହିତ ହେଉଅଛି । ମଧ୍ୟ ସ୍ୱର୍ଗୀୟ ପ୍ରସ୍ରବଣ 'ଭଦନ' ମଣ୍ଡପଠାରୁ ଆରମ୍ଭ ହୋଇ ନାନା କୌଶଳରେ ବକ୍ଷୀ-ବକ୍ଷାର ନାନାସ୍ଥାନ ଦେଇ ଏହି ମହଲରେ ଶେଷ ହୋଇ ଅଛି ॥

ମହଲର ଅନ୍ୟାନ୍ୟ ବୈଶିଷ୍ଟ୍ୟ ମଧ୍ୟରୁ ମଧ୍ୟସ୍ଥିତ ଏକ ସୁନ୍ଦର ମର୍ମର ପ୍ରସ୍ତର ନିର୍ମିତ ପଦ୍ମ ଫୁଲର କଳା କୁଶଳତା ଅବଶ୍ୟ ପ୍ରଶଂସନୀୟ । ତେରଗୋଟି ପାଖୁଡ଼ାଦ୍ୱାରା ପଦ୍ମଟି ବିସ୍ତାରିତ ହୋଇଅଛି । ପୁଣି ମଧ୍ୟଦେଶରେ ଅଷ୍ଟମ ଅଂଶ ଉର୍ଦ୍ଧ୍ୱଗଙ୍କ ପରି ନିର୍ମିତ ହୋଇଅଛି । ସୁତରାଂ ପଦ୍ମର କେତେକ ଅଂଶ ପ୍ରସ୍ଫୁଟିତ ଓ ଅନ୍ୟଅଂଶ ବିକାଶୋନ୍ମୁଖ ଅବସ୍ଥାରେ ନିର୍ମିତ ହୋଇଅଛି। ସତେ ଯେପରି ବାଦଶାହାଙ୍କ ବଳବତୀ ଇଚ୍ଛା କେତେକାଂଶରେ ଅପୂର୍ଣ୍ଣ ହୋଇ ରହି ଯାଇଅଛି । କଥିତ ଅଛି, ଏହି ପଦ୍ମଠାରୁ ଗୋଲାପ ଜଳ ବାହାରିବା ପାଇଁ ପୂର୍ବେ କୌଣସି ପ୍ରକାର ଆୟୋଜନ ଥିଲା । ଏହି ଗୋଲାପ ଜଳ ପଦ୍ମଫୁଲରୁ ବାହାରି ଖୋଦିତ ନାଳିମାନଙ୍କ ଦ୍ୱାରା ସ୍ୱର୍ଗୀୟ ପ୍ରସ୍ରବଣରେ ମିଳିତ ହେଉଥାଏ । ବାଦଶାହାଙ୍କ ଏହିପ୍ରକାର ଆୟୋଜନରେ କଳ୍ପନା ମଧ୍ୟ ଅତି ବିସ୍ମୟଜନକ ବ୍ୟାପାର । ଏହି ଯନ୍ତ୍ର ଯୁଗରେ ବିଳାସ-ବୈଭବର ନାନା ପ୍ରକାର ପରିକଳ୍ପନା ହେଉଅଛି । କିନ୍ତୁ ଯେଉଁ ଯୁଗରେ ଯନ୍ତ୍ରର ସୃଷ୍ଟି ନଥିଲା ବାଦଶାହାମାନେ ନିତ୍ୟ ନବ ନବ ଉପାଦାନରେ ନିତ୍ୟ ଲୀଳାୟିତ ବସନ୍ତୋତ୍ସବ ଉପଭୋଗ କରୁଥାଉଥିଲେ । ମୋଗଲ ସାମ୍ରାଜ୍ୟର ଅବଶେଷହିଁ ଭାରତରେ ତାହାର ସାକ୍ଷୀ ଏଥିପାଇଁ ରହି ଯାଇଅଛି ।

ବର୍ଣ୍ଣିତ ପଦ୍ମଫୁଲର ଉପରିଭାଗ ସ୍ୱର୍ଣ୍ଣାଚ୍ଛାଦିତ ଥିଲା । ପଦ୍ମର ପ୍ରତିବିମ୍ବ ସ୍ୱର୍ଗୀୟ ପ୍ରସ୍ରବଣର ପ୍ରବାହରେ କମ୍ପିତ ହେଉଥିଲା । ବୋଧହୁଏ ଏହି ପ୍ରତିବିମ୍ବ ଦର୍ଶନରେ ବାଦଶାହା ଅମିତ ସୁଖ ଉପଭୋଗ କରୁଥିଲେ । ମହଲ ତଳ [Floor] ଶୁଭ୍ର-ମର୍ମର

ଦ୍ୱାର ନିର୍ମିତ ହୋଇଥିଲା, ପୁଣି ଗଚ୍ଛଦରେ ତମ୍ବା, ତା ଉପରେ ସ୍ୱର୍ଣ୍ଣ ଆଚ୍ଛାଦିତ ହୋଇଥିଲା । କେବଳ ସ୍ୱର୍ଣ୍ଣାଚ୍ଛାଦନ ଗଛର ମହତ୍ତ୍ୱ ବଢ଼ାଇ ନଥିଲା—କାରଣ, ଏହା ଜାନୁଆରୀରେ ପ୍ରାଚ୍ୟ—ରୀତି ଅନୁଯାୟୀ ଚିତ୍ରକାର୍ଯ୍ୟ ଅତି ସୁନ୍ଦର ଦିଶୁଥାଏ । ବର୍ତ୍ତମାନ ଦର୍ଶକମାନେ ଏ ସମସ୍ତ ବୈଭବ କିଛିମାତ୍ର ଦେଖି ପାରନ୍ତି ନାହିଁ । ମହାକାଳର ମହାଅନ୍ଧକାର-ଗର୍ଭରେ ସମସ୍ତ ବିଲୀନ ହୋଇଅଛି । କେବଳ ବିସ୍ମୃତ ଗର୍ଭରୁ ଓଁକାର ଅଣିଲା ପରି ସରକାର ଅତି ଯତ୍ନ ସହକାରେ ଗୋଟିଏ ମାତ୍ର ଅର୍ଦ୍ଧ ବା ଶିଳ୍ପନ ସଂରକ୍ଷଣ କରିଅଛନ୍ତି । ଏହି ଅର୍ଦ୍ଧରେ ସୁନା -ଖଚିତ ହୋଇଥିଲା । ଦର୍ଶକମାନେ ଏହି ଶିଳ୍ପନରୁ ତଦାନୀନ୍ତନ ରଙ୍ଗ-ମହଲର ଶିଳ୍ପ-ମହତ୍ତ୍ୱ ଅନୁମାନ କରି ପାରିବେ । ନାମ କରଣରୁ ରଙ୍ଗ ମହଲର ଉଦ୍ଦେଶ୍ୟ ଜଣାଯାଏ । ବାଦଶାହା ଏହି ମହଲରେ ନୃତ୍ୟ, ଗାନ, ଇତ୍ୟାଦି ଲଳିତ କଳା ଉପଭୋଗ କରୁଥିଲେ ।

—*.*—

## ୧୪ ମାଛଧରା ମଣ୍ଡପ ବା ହ୍ୱିରା ମଣ୍ଡପ

### [Fishing Palace]

ଏଥିପୂର୍ବେ ଲେଖା ଯାଇଅଛି ଯେ ଯମୁନା ଏହି ଦୁର୍ଗର ପୂର୍ବ-ପ୍ରାଚୀର ଦେଇ ପ୍ରବାହିତ ହେଉଥିଲା । ବର୍ତ୍ତମାନ କିନ୍ତୁ ଅପେକ୍ଷାକୃତ ଦୂରରେ ଦେଖା ଯାଏ । ବାଦଶାହ ଓ ବେଗମ୍‌ମାନେ ଏହି ମଣ୍ଡପରେ ବସି ବଡ଼ିଶି ଦ୍ୱାରା ମାଛ ଧରନ୍ତି । ମଣ୍ଡପଟି ଠିକ୍ ଝରକା ତାହାଉପରେ ଓ ତଳେ ଯମୁନାର ଉଚ୍ଛ୍ୱସିତ ପ୍ରବାହ । କଥିତ ଅଛି ଏ ବାଦଶାହାଙ୍କ ରାଜତ୍ୱ ସମୟରେ ଏହାର ଛାତ ସ୍ୱର୍ଣ୍ଣରେ ଆଚ୍ଛାଦିତ

ଥିଲା । ବର୍ତ୍ତମାନ ସେସବୁ ନାହିଁ—କେବଳ ଅଧିକତର ଲୁହାଦୁଇ (Curders) ପଡ଼ି ରହି ହୋଇଅଛି ।

...—...

## ୧୫ ଅନ୍ତଃପୁର ଶୟନାଗାର

ଅନ୍ୟାନ୍ୟ ଘରମାନଙ୍କ ଅପେକ୍ଷା ଅନ୍ତଃପୁର ଶୟନାଗାର ଗୋଟିଏ ଶ୍ରେଷ୍ଠ କକ୍ଷ । ଆକାରରେ ଶ୍ରେଷ୍ଠ ହେଲେ ମଧ୍ୟ ଏହାର ଶିଳ୍ପ ଭାରତରେ ତାହାଙ୍କ ସମସ୍ତ ସ୍ଥାପତ୍ୟରେ ମଧ୍ୟ ବିରଳ । ଏହି ଘରର ମର୍ମର କାନ୍ଥ ଏପରି ପାତଳ ଯେ, ସୂର୍ଯ୍ୟ ଉଦୟ ହେବା ମାତ୍ରେ ସୂର୍ଯ୍ୟ ଆଲୋକ ଏଇଠି କକ୍ଷ ମଧ୍ୟରେ ମଧ୍ୟ ଫୁଟିଉଠେ । ବୋଧହୁଏ ପାହାନ୍ତି ପ୍ରତ୍ୟୁଷରୁ ଶଯ୍ୟାତ୍ୟାଗ କରିବା ବାଦଶାହଙ୍କ ଇଚ୍ଛା । ସୁତରାଂ ଏହିପରି ବନ୍ଦୋବସ୍ତ ହୋଇଥିଲା ।

ବାଦଶାହମାନେ ବଡ଼ ବିଳାସୀ ଥିଲେ ସତ, କିନ୍ତୁ ରାଜ୍ୟ ଶାସନରେ ସର୍ବଦା ଜାଗ୍ରତ ଥିଲେ । ସୁତରାଂ ଯେପରି ପାହାନ୍ତି ପ୍ରତ୍ୟୁଷରୁ ନିଦ୍ରାଭଙ୍ଗ ହେବ, ସେହିପରି ଆୟୋଜନ କରିଥିଲେ ।

...—...

## ୧୬ ଦର୍ଶନ କୋଠରି

ଦର୍ଶକମାନେ ଏହି ଦର୍ଶନ କୋଠରି ଦେଖିଲା ବେଳେ ବାଦଶାହଙ୍କ ଅମଳର ସେହି ଜାତି ପ୍ରଶଂସା ନକରି ରହିପାରିବେ ନାହିଁ । ଏହି କୋଠରିରେ ସମ୍ରାଟ ନିଜ ଅଧିନ ପ୍ରଜାମାନଙ୍କୁ ଦର୍ଶନ ଦେଉଥାନ୍ତି । ସମ୍ରାଟ ପ୍ରାତଃକୃତ୍ୟ ସାରି ଏହି କୋଠରିର ଦ୍ୱାରଦେଶରେ ଦଣ୍ଡାୟମାନ ହୁଅନ୍ତି । ଜନତା ଭକ୍ତିପୂର୍ଣ୍ଣ ଚିତ୍ତରେ

ଅକ୍ଲମାସ୍ତ ହମ୍ବାଚଳ ଭାଗ୍ୟଧରଙ୍କ, ଦର୍ଶନ କରନ୍ତି । ପ୍ରତ୍ୟହ ପାଳିତ ଘୋଡ଼ା-ହାତୀ ମଧ୍ୟ ଏଠାରୁ ସମ୍ରାଟ ଦେଖନ୍ତି ।

ଏହି କୋଠରୀର ଗୃହପାର୍ଶ୍ୱ ପାଞ୍ଚକୋଣିଆ ମର୍ମର ଜାଳିରେ ନିର୍ମିତ ହୋଇଅଛି । ଏହା ମୁଖଦ୍ୱାରଠାରୁ ଅପେକ୍ଷାକୃତ ଉଚ୍ଚ । ଅର୍ଦ୍ଧ ଥାଇ ଦ୍ୱାର ହୋଇଅଛି । ତାହା ଉପରେ ଥିଲେ ମଧ୍ୟ ବାହାରକୁ ଦିଶେ । ୧୯୧୧ ଖ୍ରୀଷ୍ଟାବ୍ଦରେ ଯେତେବେଳେ ସ୍ୱର୍ଗତ ସମ୍ରାଟ ପଞ୍ଚମ ଜର୍ଜ ଭାରତକୁ ଆସିଥିଲେ ଏହିଦ୍ୱାର ଉପରୁ ଦର୍ଶନାକାଂକ୍ଷୀ ଜନତାକୁ ଦର୍ଶନ ଦେଇଥିଲେ । ତାଜପୂଜା ମଧ୍ୟ ଏହି ଠାରେ ହୋଇଥିଲା ।

'ଦର୍ଶନୀ' ଉପରୁ ଚଏତ୍ୟ ଦୃଶ୍ୟ ବଡ଼ ସୁନ୍ଦର ଦେଖାଯାଏ । ଏଠାରୁ ଯମୁନାର ନୀଳପ୍ରବାହ ଦର୍ଶକର ମନମୁଗ୍ଧ କରେ । ରେଲମାର୍ଗ ଏଠାରୁ ସ୍ପଷ୍ଟ ଦେଖାଯାଏ ।

---

## ୧୭ ମୁସାମନ୍ ବୁରୁଜ୍ (Octagonal Tower)

ଏହି ପ୍ରାସାଦରେ ବାଦଶାହାମାନେ ରହନ୍ତି । ଏହା ଉପରକୁ ଯିବାପାଇଁ ନିଷେଧାଜ୍ଞା ଅଛି । ବାହାରରୁ ବା ତଳଦେଶରୁ କେବଳ ଦେଖିବାକୁ ହୁଏ ।

---

## ୧୮ ମମ୍‌ତାଜମହଲ ବା ମ୍ୟୁଜିଏମ୍

ଏ ଗୃହର ନାମ ମମ୍‌ତାଜମହଲ । ଅଧୁନା ଏହା ଏକ ମ୍ୟୁଜିଏମ ରୂପରେ ପ୍ରତିଷ୍ଠିତ ।

ଏହା ମଧ୍ୟରେ ଏହା ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ଅନ୍ୟାନ୍ୟ ଭବନ ଅପେକ୍ଷା 'ମ୍ୟୁଜିୟମ'ର ଐଶ୍ୱର୍ଯ୍ୟ ବୈଚିତ୍ର୍ୟରେ ପ୍ରାଧାନ୍ୟ ନାହିଁ । ତଥାପି ତୈମୁରଙ୍କ ଠାରୁ ଶେଷ ବାଦଶାହାଙ୍କ ପର୍ଯ୍ୟନ୍ତ ସମସ୍ତ ସମ୍ରାଟଙ୍କ ବ୍ୟବହୃତ ପଦାର୍ଥମାନ ରକ୍ଷିତ ରଖାଯାଇ ଅଛି । ଯେଉଁ ପଦାର୍ଥମାନ ସଂରକ୍ଷିତ ହୋଇ ଅଛି, ତାହା ଲେଖିବସିଲେ ଗୋଟିଏ ବୃହତ୍ ଗ୍ରନ୍ଥ ହେବ । ପାଠକମାନଙ୍କ ପାଇଁ ମୁଁ କେବଳ ଅତି ଅଳ୍ପ ବିବରଣୀ ଦେଇପାରେ । ଅବଶ୍ୟ ଏହି ମ୍ୟୁଜିୟମ ସ୍ୱଳ୍ପ ଯତ୍ନ ଦୃଷ୍ଟିରେ ଏହାର ଜନ୍ମ ସମସ୍ତଙ୍କରେ ରହିପାରେ—ଏଣୁ ପ୍ରାଚୀନ ପଦାର୍ଥମାନ ରକ୍ଷିତ ହୋଇଥିବାରୁ ଏହାର ସର୍ବୋଚ୍ଚ ସ୍ଥାନ ପାଇଅଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ତତ୍ତ୍ୱଭରଣା ଗୁଣବତୀ ସ୍ତ୍ରୀ ଯେପରି ସମସ୍ତଙ୍କ ଠାରୁ ସମାଦର ପାଏ, ଏହି ମନଧାନ୍ତ ମନ୍ଦିରରେ ମଧ୍ୟ ଉତ୍କୃଷ୍ଟ ପ୍ରାଚୀନ ଜିନିଷ ସବୁ ଥିବାରୁ ଦର୍ଶକମାନଙ୍କ ସମାଦୃତ ହେଉ ଅଛି ।

ଏଠାର ସମସ୍ତ ଭବନମାନ ଦେଖାଇବା ପାଇଁ ପ୍ରଦର୍ଶକ ବା Guideର ସାହାଯ୍ୟ ଆବଶ୍ୟକ ହୁଏ । କିନ୍ତୁ ଏହି ମ୍ୟୁଜିୟମ୍ ପାଇଁ ପୃଥକ୍ ବ୍ୟବସ୍ଥା ହୋଇଅଛି । ଏହି ମ୍ୟୁଜିୟମ୍ ସବୁବେଳେ ସ୍ୱତନ୍ତ୍ର ପ୍ରଦର୍ଶକ ଅଛନ୍ତି—ଯେଉଁମାନେ ଏ ସଂରକ୍ଷିତ ଜିନିଷମାନଙ୍କ ସମ୍ପୂର୍ଣ୍ଣ ବିବରଣୀ ଦେଇ ପାରନ୍ତି । କେତେକ ବିଶିଷ୍ଟ ଦ୍ରବ୍ୟର ବିବରଣୀ ନିମ୍ନରେ ଦିଆଗଲା ।

ସମସ୍ତ ଜିନିଷ କେତେକ ଥାକ ମେଜ ଓ କେତେକ କାନ୍ଥରେ ଟଙ୍ଗାଯାଇ ରଖା ଯାଇଅଛି ।

୧ ବାଦଶାହା ଶାହାଜାନଙ୍କ ସଙ୍ଗବର ପଥର ମୂର୍ତି । ଏହା ପଶ୍ ପଥରରେ ନିର୍ମିତ ।

୨ ପଶ୍ପଥରରେ ନିର୍ମିତ ପାନଥାଳ ।

୩ ଶୁକ୍ଳ ପଥରର ଦେଣ୍ଡା ମୂର୍ତି ।

୪ ପଶ୍ ପଥରର ନାସଦାନ ।

୫ ପୃଥ୍ୱୀରାଜ ଉପାସନା ଦେବୀଙ୍କର ଚତୁର୍ଭୂଜ ନାରାୟଣମୂର୍ତ୍ତି, ନୀଳପଥରରେ ଗଢ଼ା । ଏହାର ହାତ ଭଙ୍ଗ ଯାଇ ଅଛି ।

୬ ସାହାଜାହାନଙ୍କ ହୁକ୍କା ।

୭ ପିକଦାନ—ଏହା ଲୁହା ଉପରେ ରୁପା ମୀନାକାମ । ଜୟପୁର ନିର୍ମିତ ବୋଧହୁଏ ।

୮ ସାହାଜାହାନଙ୍କ ସମୟର ଭୂଗୋଳ (Globe) । ଏହା ପିତ୍ତଳରେ ହୋଇଅଛି ।

୯ ଖ-ଗୋଳର ଗୋଟିଏ ନକ୍ସା । ଏହାମଧ୍ୟ ପିତ୍ତଳରେ ଗଢ଼ା ।

୧୦ ଭାରତର ସିପାହୀ ବିଦ୍ରୋହର ଚିତ୍ର [୧୮୫୭]

୧୧ ୧୮୫୭ ସାଲର Illustrated London News ବା ସଚିତ୍ର ଲଣ୍ଡନ ସମ୍ବାଦ ପତ୍ରିକାର କେତେକାଂଶ ।

୧୨ ୧୮୦୭ ଖ୍ରୀଷ୍ଟାବ୍ଦରେ ମିର୍ଜା ଜାହାଙ୍ଗିର (ଅକବରଙ୍କ ଦ୍ୱିତୀୟ ପୁଅ) ଙ୍କୁ ଇଂରେଜମାନଙ୍କ ପ୍ରଦତ୍ତ ସଙ୍ଗୀତ ଘଣ୍ଟା [Musical Clock)

୧୩ ୧୬୮୫ରେ ଅସ୍ତରବର ଇବ୍ରାହିମ (Ibrahim of Astarabar)ଙ୍କ ଲିଖିତ ୨୨ ପୃଷ୍ଠା ଦୈର୍ଘ୍ୟ × ୩ ୩/୫ ପ୍ରସ୍ଥ

ପତଳା କାଗଜରେ ସମୁଦାୟ କୋରାନ୍ । ଏହା ଏତେ ଛୋଟ ଯେ ମେଗ୍‌ନି ଫାଇଂ ଗ୍ଲାସ (Magnifying Glass) ଦ୍ୱାରା କେବଳ ପଢିହେବ ।

୧୪ ମୋଗଲମାନଙ୍କ ବ୍ୟବହୃତ ଯୁଦ୍ଧ ସମୟର 'କମରବନ୍ଧ' ।

୧୫ ଜନ୍ ନିକଲସନ୍ (General Nicholson) ଯେଉଁ କୋଟ ଲଗାଇ ମାରହଟ୍ଟା ଯୁଦ୍ଧରେ ୧୮୫୭ ଖ୍ରୀଷ୍ଟାବ୍ଦରେ ଆହତ ହୋଇଥିଲେ—ସେହି କୋଟ୍ । ଏହି କୋଟରେ ମଧ୍ୟ ଗୁଳିଚିହ୍ନ ଅଛି। H. W. Angelo ନାମକ ତାଙ୍କର ଜଣେ ବନ୍ଧୁ ଏହି କୋଟଟି ମ୍ୟୁଜିଅମକୁ ଦେଇଥିଲେ ।

୧୬ ଜନ୍ ନିକଲ୍‌ସନଙ୍କ ଦୂରବୀକ୍ଷଣ ଯନ୍ତ୍ର [Binocular]

୧୭ ସୁଜା ମୋହନ ଆଉ ବାହାଦୁର ଖାଁଙ୍କ, ଇଂରେଜମାନଙ୍କ ପ୍ରଦତ୍ତ Imitation Worcester Procelane ware ।

୧୮ ଶାହାଜାନଙ୍କ କାଚ ନିର୍ମିତ ନେଳୀବର୍ଣ୍ଣର ଖାଦ୍ୟପାତ୍ର । ଏହି କାଚପାତ୍ରର ବିଶେଷତ୍ୱ ଏହି ଯେ, ଏଥିରେ ବିଷ ସମ୍ବନ୍ଧୀୟ ଦ୍ରବ୍ୟ ପଡିବା ମାତ୍ରେ ଫାଟିଯିବ । ସୁତରାଂ ସ୍ୱନା ରୂପରେ ନିର୍ମିତ ପାତ୍ରମାନ ବ୍ୟବହାର ନକରି ଶାହାଜାନ ଏହି କାଚପାତ୍ରମାନଙ୍କରେ ଭୋଜନ କରୁଥାନ୍ତି ।

୧୯ ଔରଂଜେବଙ୍କ ପାଣିପିଇବା ମାଟି ମାଠିଆ ଓ ଢାଇ (ଖ୍ରୀ ୧୬୬୧) ।

୨୦ ଶାହାଜାନଙ୍କ ସମୟର ଦକ୍ଷିଣ ମାନଚିତ୍ର [Map] ।

୨୧ ଯୁଦ୍ଧରେ ବ୍ୟବହୃତ ଧ୍ୱଜାର ଉପର ଭାଗ—ପିତ୍ତଳ ମାଛି ଉପରେ ଗୋଟିଏ ଗୋଲ ହାତ ।

୨୨ ମୋଗଲ ସମ୍ରାଟରେ ବ୍ୟବହୃତ ତଲବାର୍, ସାଞ୍ଜୁ ଓ ଚମଡ଼ା ପିସ୍ତଲ ।

୨୩ ବାହାଦୁର ଶା'ଙ୍କ ବ୍ୟବହୃତ ପୋଷାକ—ପାଇଜାମା ଓ ତାଙ୍କ ବେଗମ୍‌ଙ୍କ ଲଗି ଲଙ୍ଗା ଓ ଓଢ଼ଣା ।

୨୪ ବାହାଦୁର ଶା' II ଙ୍କ ୧୮୫୮ ର ଫଟୋ । ଏହା ଦିଲ୍ଲୀ ଜେଲରେ ଉଠାଯାଇଥିଲା । ବୃଦ୍ଧ ମୃତ ଶଯ୍ୟାରେ ଶାୟିତ । ପାଖରେ ଗୋଟିଏ ହୁକ୍କା—ବଦନ ବିଷଣ୍ଣ, ଶରୀର ଦୁର୍ବଳ ଏହି ଫୋଟୋ ମୋଗଲ ସମ୍ରାଟଙ୍କ ପ୍ରଥମ ଓ ଶେଷ ଫୋଟୋ । [First & Last ]

୨୫ ବାହାଦୁର ଶା' II ଙ୍କ ବେଗମ୍‌ଙ୍କ ଅଲଙ୍କାର ।

୨୬ କୁତୁବମିନାରର ଉପର ତୁଟି ଲାଗ ବଜ୍ରପାତ ହାର କଳସକା ପୂର୍ବର—ହାତ ଲେଖା ଛବି ।

୨୭ ବାହାଦୁର ଶା II ଙ୍କ ବ୍ୟବହୃତ କୋଟି ଚୌକି ।

୨୮ ୧୮୪୭ ଓ ୧୮୪୮ ର ଦିଲ୍ଲି ଗେଜେଟିଅର (Delhi Gazetteer) ।

୨୯ ବାହାଦୁର ଶା'ଙ୍କ ମଖମଲ ପଙ୍ଖା ଓ ଗାଦି ଉପରେ ଟଣା ହେବା ଜଣ୍ଡ ଓ ଲାଲ୍ ମଖମଲ ବସ୍ତୁ ।

୩୦—୧୬୩୮ରେ ଶାହାଜାନ ଗ୍ୱାଲିଅର ଠାରୁ ଜୟ କରି ଆଣି କୋଟି ସୁନ୍ଦର ବଡ଼-ପଥର ହାତୀ, ଅଣି ଦରଜାରେ ରଖିଥିଲେ । କେଉଁ କାରଣରୁ କେଜାଣି, ଅରଂଜେବ ତାହାକୁ ଖଣ୍ଡ ଖଣ୍ଡ କରି ଭାଙ୍ଗି ଦେଲେ । ତାହାର ପ୍ରତିରୂପ ବର୍ତ୍ତମାନ ଲର୍ଡ କର୍ଜନଙ୍କ ଦ୍ୱାରା ଦିଲ୍ଲୀ ଗତଣ ଦିଲ୍ଲୀ ଗେଟରେ ଦେଖା ଯାଉଅଛି । ଲାଲ

ଶମ୍ଭୁନାଥ ନାମକ ଜଣେ ବ୍ୟକ୍ତି ଏହି କଳା ପଥର ହାଉମାନଙ୍କ ଭଗ୍ନାବଶେଷ ଗୁଡ଼ିକ ଆଣି ଏଠାରେ ରଖାଇ ଅଛନ୍ତି ।

୩୧—ମୋଗଲ ରାଜତ୍ୱ ସମୟର ବ୍ୟବହୃତ ତୋପ ଓ ଗୁଳି ।

୩୨—ଓଟ ଉପରେ ଲଦା ହୋଇ ମଣ୍ଡଯିବା ଛୋଟ ତୋପ ।

୩୩—ହାତ ଲେଖା ସମସ୍ତ ମୋଗଲ ସମ୍ରାଟ ଓ ବେଗମ-ମାନଙ୍କ ଛବି । ଏଥିର ନକଲମାନ 'ଭାରତ ଇତିହାସ'ମାନଙ୍କରେ ଦେଖ ଯାଇଥାଏ ।

ଏତିକି ପଦାର୍ଥର ଅବତାରଣା କରିଯାଇ ମ୍ୟୁଜିୟମ ବର୍ଣ୍ଣନ ଶେଷ କରିଯାଉ । ମ୍ୟୁଜିୟମର ସମସ୍ତ ପଦାର୍ଥର ଅବତାରଣା କଲେ ଗୋଟିଏ ପ୍ରକାଣ୍ଡ ଗ୍ରନ୍ଥ ହେବ । ପୁଣି ସମସ୍ତ ପଦାର୍ଥର ପଶ୍ଚାତ ଏକ ଏକ ପ୍ରକାଣ୍ଡ ଇତିହାସ ସନ୍ନିବେଶିତ ହୋଇ ଥିବାରୁ ତାହା ଅଧିକ ବଡ଼ୁଲ ହେବ । ତଥାପି, ଏହି ଗ୍ରନ୍ଥ ଯଦି କେହି ଉଦ୍ଧାର କରନ୍ତି, ତେବେ ସେ ଅବଶ୍ୟ ପାଠକମାନଙ୍କର ମନୋରଞ୍ଜନ କରି-ପାରିବେ । ଦିଲ୍ଲୀ ସହରରେ କେବଳ ମ୍ୟୁଜିୟମ ଦେଖି ଆସିବା ଆମ୍ଭମାନଙ୍କ ଭ୍ରମଣର ଉଦ୍ଦେଶ୍ୟ ନଥିଲା । ସୁତରାଂ, ମ୍ୟୁଜିୟମର ସମସ୍ତ ବାହ୍ୟ ଶ୍ରୀ ମଧ୍ୟରେ କେତେ ଗୋଟି ପ୍ରସିଦ୍ଧ ପଦାର୍ଥର ଅବତାରଣା କରି କ୍ଷାନ୍ତ ହେଲି । ଯଦି କେହି ଏହି ପଦାର୍ଥ-ମାନଙ୍କର ବିଶେଷ ବିବରଣୀ ପୁସ୍ତକାକାରରେ ପ୍ରକାଶ କରନ୍ତି, ତେବେ ତାଙ୍କ ଗ୍ରନ୍ଥ ମୁଁ ସର୍ବପ୍ରଥମେ ଦେଖି ବିଶେଷ ଅନୁଗୃହୀତ ହୁଅନ୍ତି ।

ଲାଲ କିଲ୍ଲା ସମ୍ବନ୍ଧେ ମୋର ଶେଷ ମନ୍ତବ୍ୟ ଦେବା ଉଚିତ ମନେ କରେ । ମୋଗଲ ସମ୍ରାଟମାନଙ୍କ ଅସଂଖ୍ୟ କୀର୍ତ୍ତି ଏହି ଲାଲ କିଲ୍ଲାରେ ଜଡ଼ିତ ହୋଇ ରହିଥିବାରୁ ମୋଗଲ ସମ୍ରାଟଙ୍କ ସମ୍ବନ୍ଧେ ପଦେ ଅଧେ ଲେଖିବା ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ । ମୋଗଲ ସମ୍ରାଟମାନେ ପ୍ରାୟ ସମସ୍ତେ ଭୋଗବିଳାସୀ ଥିଲେ । ତଥାପି କେତେକ ସେମାନଙ୍କ ଦୋଷ ବାଦ୍ ଦେଲେ ଶାସନ କାଳରେ ସେମାନେ ଉପଯୁକ୍ତ କର୍ତ୍ତା ରୂପେ ରାଜ୍ୟ ପାଳନ କରୁଥିଲେ । ପୁଣ୍ୟଶ୍ଳୋକ ଅକବର୍ ଏଥିର ଜ୍ଵଳନ୍ତ ଦୃଷ୍ଟାନ୍ତ ଓ "ଧର୍ମଚକ୍ର" ପରିକଳ୍ପନା ମୋର ଏହି ମତର ସମର୍ଥକ । ଐତିହାସିକ ଯୁଗରେ ମୋଗଲମାନେ ସର୍ବଶ୍ରେଷ୍ଠ ଧନୀ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ—ଏବେ ମଧ୍ୟ ହାଇଦ୍ରାବାଦ ନବାବ ପୃଥିବୀର ସର୍ବଶ୍ରେଷ୍ଠ ଧନୀ ରୂପେ ପରିଚିତ ହୁଅନ୍ତି । ଏତେ ଧନ ରତ୍ନ ମଧ୍ୟରେ ଭୋଗ ବିଳାସିତା ଯେ ନିତାନ୍ତ ସ୍ୱାଭାବିକ, ଏହା କହିବା ବାହୁଲ୍ୟ । ମୋଗଲ ସମ୍ରାଟମାନେ ଧନୀ ଥିଲେ—ସୁତରାଂ ଭୋଗ ବିଳାସିତା ସେମାନଙ୍କ ଛାୟା ପରି ଅନୁଗମନ କରୁଥିଲା, ଲାଲ କିଲ୍ଲା ସେଥି ହେତୁ ମର୍ତ୍ତ୍ୟର ଇନ୍ଦ୍ରଭବନ ହୋଇଥିଲା ପୁଣି ସ୍ୱର୍ଗୀୟ ପ୍ରସ୍ରବଣ ନାନା ରୂପରେ କିଲ୍ଲାର ନାନା ସ୍ଥାନରେ ପ୍ରବାହିତ ହୋଇ ସୌନ୍ଦର୍ଯ୍ୟ-ଶାଳୀ ବାଦଶାହଙ୍କ କୀର୍ତ୍ତି ଘୋଷଣା କରୁଥିଲା । ଆଜି ଏ ସମସ୍ତ କୀର୍ତ୍ତି ସ୍ତମ୍ଭର ଭଗ୍ନାବଶେଷ ଦେଖି ମୋଗଲ ଶତ୍ରୁମାନେ ମଧ୍ୟ କାନ୍ଦିବା ଉଚିତ ହୁଏ ।

ମନେ ହୁଏ, ବିଳାସିତା ଏତେ ମାତ୍ରାରେ ବଢ଼ି ନଥିଲେ ଆଜି ଏହି ସାମ୍ରାଜ୍ୟ ଲୁପ୍ତ ହୋଇ ନଥାନ୍ତା । ବାସ୍ତବିକ ଉଚିତ

ବିଳାସିତାହିଁ ଏହି ସାମ୍ରାଜ୍ୟ ଧ୍ୱଂସ ହେତୁ ହୋଇଅଛି । ମୋଗଲ ସମ୍ରାଜ୍ୟର ପ୍ରଥମ ସମ୍ରାଟମାନେ ମଧ୍ୟ ବିଳାସୀ ଥିଲେ, ମାତ୍ର ରାଜ୍ୟ ଶାସନ ବିଷୟରେ ସେମାନଙ୍କ ଦୃଷ୍ଟି ରହିଥିଲା, କିନ୍ତୁ ପରବର୍ତ୍ତୀ ସମ୍ରାଟମାନେ କେବଳ ବିଳାସରେ ବୁଡ଼ି ରହି ରାଜ୍ୟ ଶାସନ ପ୍ରତି ଦୃଷ୍ଟିପାତ କଲେ ନାହିଁ । ଦେଶ ରକ୍ଷଣ ପାଇଁ ଯେଉଁ ଯୁଦ୍ଧ ବିଦ୍ୟା ଧର୍ମ ବୋଲି ପ୍ରସିଦ୍ଧି ଲଭିଥିଲା, ଏହି ସମ୍ରାଟମାନେ ସେହି ଯୁଦ୍ଧକୁ ପରିଷ୍କାର ଅବହେଳା ପାଇଁ ଧର୍ମ୍ମ କଲେ । ଦେଶବାସୀ ପ୍ରଜାମାନେ ଏହି ନରରୂପୀ ଦେବତାଙ୍କ ଠାରେ ଅଭିମନ୍ଦହ ନ ଦେଖି ପ୍ରତ୍ୟକ୍ଷ ଓ ପରୋକ୍ଷ ବିଦ୍ରୋହ କଲେ । ଫଳରେ ଏହି ପରାକ୍ରାନ୍ତ ମୋଗଲ ରାଜଶକ୍ତି ଲୁପ୍ତ ହେଲା ଓ ନ୍ୟାୟ ପରାୟଣ ରାଜଶକ୍ତିର ଅଭ୍ୟୁଦୟ ହେଲା । ଯାହା ହେଉ, ମୋଗଲ ରାଜତ୍ୱ ଭାରତର ଚିରସ୍ମରଣୀୟ ହୋଇ ରହିବହିଁ ରହିବ ।

•••——•••

## Central Asiatic Antiquities Museum

ଏହି ନାମରେ ନୂତନ ଦିଲ୍ଲୀରେ ଗୋଟିଏ ଯାଦୁଘର ଅଛି । ଏହି ଗୃହର ପ୍ରଥମ ଭାଗ ସୁନ୍ଦର ଲାଲ ଧୂଳିମୟ ପଥରରେ ନିର୍ମିତ ହୋଇ ଅଛି । ଗୃହର ପଶ୍ଚାଦ୍ଭାଗ ନୂତନ ପ୍ରଣାଳୀ Re-enforced Concreteରେ ନିର୍ମିତ ହୋଇଅଛି । ପ୍ରଥମ ଭାଗରେ ଉପରେ କଥିତ ମ୍ୟୁଜିଅମ ଅବସ୍ଥିତ ହୋଇଅଛି । ଦ୍ୱିତୀୟ ଭାଗରେ ସାମ୍ରାଜ୍ୟ ସମ୍ବନ୍ଧୀୟ ବର୍ଣ୍ଣିଷ୍ଠ ଦପ୍ତର [Imperial record Department] ମାନ ରକ୍ଷିତ ଅଛି । ଏହି ଭାଗ ଯେ କୌଣସି ବ୍ୟକ୍ତିର ପ୍ରବେଶ ନିଷେଧ । କାରଣ ସରକାରଙ୍କ ପ୍ରଧାନ ପ୍ରଧାନ କାଗଜ ଏହି ଗୃହରେ ରଖା ଯାଇଅଛି ।

ଲାଲ ଗୃହର [ଲାଲ ଡାବମ୍। ପଥରରେ ନର୍ମିତ ହୋଇ-ଥିବାରୁ ନାମ ଲାଲଗୃହ ଦଥାଗଲା] ଏକ ଅଂଶରେ କୃଷି ଦେ୍ଷ ଭଣ୍ଡାର [Agricultural Research Department] ମଧ୍ୟ ଅଛି । ଏହି ଗୃହରେ ମଧ୍ୟ ପ୍ରବେଶ କରିବା ମନା ଅଛି । କେବଳ ଦର୍ଶକମାନେ ଉପର ମହଲରେ ଥିବା ମ୍ୟୁଜିଏମ କେବଳ ଦେଖି ପାରନ୍ତି ।

ଏହି ମ୍ୟୁଜିଏମର ଦୋର୍ଥ ଗୁଡିକ ବହୁ ଶ୍ରମ ବ୍ୟୟ କରି Sir Aurel Steen K. C. I. E ୧୯୦୦ ଠାରୁ ୧୯୦୬ ପର୍ଯ୍ୟନ୍ତ ଚୀନ ଦେଶୀୟ ତୁର୍କୀ ମରୁଭୂମିରୁ ଓ ପଶ୍ଚିମ ଚୀନାର ଖାନ୍ତ ଦେଶରୁ ଅଣିଥିବା ପ୍ରକାଶ । ମ୍ୟୁଜିଏମର ଏକ ଜାଗାରେ ଲେଖା ଯାଇଅଛି :—

"Collected by Sir Aurel Steen K.C.I.E from the desert of Chinese Turkistan and border tract of western China during 1900—1906."

ଏହି ସାହେବଙ୍କ ମତରୁ ଜଣାଯାଏ ଯେ, ସେହି ପ୍ରଦେଶ-ମାନଙ୍କରେ ଖ୍ରୀଷ୍ଟାବ୍ଦର ୧ମ ଶତାବ୍ଦୀ ଠାରୁ ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ ଗୋଟିଏ ଅତି ଶିକ୍ଷିତ ଜାତି ବାସ କରୁଥିଲେ । ଏବେ ସେହି ଜାତି ଲୁପ୍ତ ହୋଇଅଛି । ସେମାନେ ବୌଦ୍ଧଧର୍ମାବଲମ୍ବୀ ଥିଲେ । ତାଙ୍କ ସଂଗୃହୀତ ପଦାର୍ଥମାନଙ୍କରୁ ସେ' ଏହି ସିଦ୍ଧାନ୍ତ ଉପନୀତ ହୋଇଅଛନ୍ତି । ସଂଗୃହୀତ କେତେକ ପଦାର୍ଥର ବିବରଣୀ ଦଆଗଲା ।

୧ ପ୍ଲାଷ୍ଟ—ଚୂନ ନିର୍ମିତ ବୁଦ୍ଧ ଦେବଙ୍କ ମସ୍ତକ (Plastic Art of Ancient khotan) ଏହା ୧ମ ଠାରୁ ୧୦ ଶତାବ୍ଦୀ ମଧ୍ୟରେ ନିର୍ମିତ ହୋଇଥିବା ସାହେବଙ୍କ ମତ ।

୨ କାଠ ଓ ଧାତୁ ନିର୍ମିତ କେତେ ଗୋଟି ମୂର୍ତ୍ତି [Wood & Bronze figures) ଏହା ୩ୟ ଠାରୁ ୧୨ ଶତାବ୍ଦୀ ମଧ୍ୟରେ ନିର୍ମିତ ହୋଇଥିଲା । ଟାକଲା ମକାନ ମରୁଭୂମିର [Takla-makhan desert] ଦକ୍ଷିଣ ସୀମାରୁ ଏହା ଅଣା ଯାଇଅଛି ।

୩ Astana Cemetryର ଲୋକଙ୍କ ପରିଧାନ ପାଟ । ଏହା ସପ୍ତମ ଶତାବ୍ଦୀର ପଦାର୍ଥ । ସାରଫେନ (Surfan)ରୁ ଅଣାତ ହୋଇଅଛି ।

୪ ମାଟି ନିର୍ମିତ ଓଟ, ଘୋଡା ଓ ସୃଷ୍ଟସର ପ୍ରତିରୂପ । ଚୀନ ଦେଶୀୟ ଭୁର୍କୀ ସ୍ଥାନ ଓ କାସ୍ପ ପ୍ରଦେଶରୁ ଅଣାତ ।

୫ ଭଗ୍ନ ବ୍ୟବହୃତ ମୁଦ୍ରିକା ପାତ୍ର ଏହା କାଲଟ ସ୍ଲେଟ, ବେଲୁଚ ସ୍ଥାନ ଓ ମୋସୋପାଟୋମିଅରୁ ଅଣାତ ।

୬ ବୁଦ୍ଧଦେବଙ୍କ କେତେ ଗୋଟି ମୂର୍ତ୍ତି, ଏ ସମସ୍ତ ସିନାରେ ନିର୍ମିତ ହୋଇଅଛି । Sukhavati the Paradise of Amilabha or(Sakyamu)from the thousand Budha's near Tun-huang, VII—X cen. A.D.

୭ ସେହି ସ୍ଥାନର ଯୁଦ୍ଧ ବ୍ୟବହୃତ ପାଟ ଧ୍ଵଜା ।

ଏହି ମ୍ୟୁଜିଏମ ବା ପ୍ରଦର୍ଶନିରେ ଅବଶ୍ୟ ଅଦ୍ଭୁତ ଅନେକ ଦ୍ରବ୍ୟ ଅଛି, ସେ ସମସ୍ତ ଲେଖିବା ବହୁ ପୃଷ୍ଠା ସାପେକ୍ଷ – କେବଳ ଏଥିର ଅଳ୍ପ ମାତ୍ର ଏଠାରେ ଦିଆ ଯାଇଛି ।

—:(୦):—

# Ivory Palace

ଏହି ନାମରେ Canought Palace, New Delhiରେ ଗୋଟିଏ ଦୋକାନ ଅଛି । ଏହାର ଶାଖା (Branch) ମଧ୍ୟ ଜୁମା ମସଜିଦ ପାଖରେ ଅଛି । ଏହି ଦୋକାନ ଆମ୍ଭେମାନେ ଦେଖିବାକୁ ଯାଇଥିଲୁ । ଭାରତୀୟ ଶିଳ୍ପ ସଂରକ୍ଷଣ ଦିଗରେ ଏହି ଅନୁଷ୍ଠାନର କର୍ତ୍ତାମାନେ ବିଶେଷ ଭାବେ ମନୋଯୋଗୀ ହୋଇଥିବା ଏହି ଅନୁଷ୍ଠାନ କାର୍ଯ୍ୟମାନଙ୍କରୁ ଜଣାଯାଏ । ଆମ୍ଭମାନଙ୍କ ପରିଦର୍ଶନ ବେଳେ ଜଣେ ବୃଦ୍ଧ ଶିଳ୍ପୀ ଖଣ୍ଡେ ହାତୀ ଦାନ୍ତରେ ଶ୍ରୀକୃଷ୍ଣଙ୍କ ଜନ୍ମ-ପର ସମସ୍ତ ଘଟଣାମାନ ନିର୍ମାଣ କରୁଥିଲେ । ଯୁବକମାନେ ଏହି ଶ୍ରେଷ୍ଠ କାର୍ଯ୍ୟରେ ଭାରତର ଅଦ୍ୱିତୀୟ ଚିତ୍ର ଜଗତର ସମସ୍ତ ଚିତ୍ର-ଉପଲବ୍ଧି କରି ପାରିବେ । ଶୁଣିଲୁ, ବୃଦ୍ଧଶିଳ୍ପୀ ଏକ ବର୍ଷ କାଳ ଏହି କାର୍ଯ୍ୟରେ ମନୋଯୋଗୀ ହୋଇଅଛି । ତଥାପି ପୂର୍ଣ୍ଣ ହୋଇ ନାହିଁ । ଯେଉଁ ଶିଳ୍ପୀମାନେ ଏଠାରେ କାର୍ଯ୍ୟ କରନ୍ତି ସେମାନେ ଟ ୧୯୦ ଠାରୁ ଟ ୪୯୦ ପର୍ଯ୍ୟନ୍ତ ମଜୁରି ପାନ୍ତି । ଆଉ କେତେଜଣ ଶିଳ୍ପୀ ହାତୀ ଦାନ୍ତରେ ଚିତ୍ର ଖୋଦନ କରୁଥିଲେ ।

ଏହି Ivory Palaceର ମାଲିକ ଶ୍ରୀଯୁକ୍ତ ଫକୀରଚନ୍ଦ୍ର ରଘୁନାଥ ଦାସ ଭାରତୀୟ ଶିଳ୍ପ, କଳାର ସଂରକ୍ଷଣ ତଥା ଉତ୍କର୍ଷ ସାଧନରେ ଏହାଙ୍କର ଯଥେଷ୍ଟ ସୁଖ୍ୟାତି ଅଛି । ହାତୀ ଦାନ୍ତ, ଚନ୍ଦନ କାଠ ପୁଣି ପିତ୍ତଳ କାର୍ଯ୍ୟମାନଙ୍କରେ ଏହି କମ୍ପାନୀର ବ୍ୟବସାୟ ବହୁ ଦେଶବ୍ୟାପୀ ହୋଇଅଛି । କେତେ ଗୋଟି ବଶିଷ୍ଟ କାର୍ଯ୍ୟର ବିବରଣୀ ଦିଆଗଲା—ଏ ସମସ୍ତ ପଦାର୍ଥ ବିକ୍ରୟ ପାଇଁ ରକ୍ଷିତ ରହିଅଛି ।

୧—୨ ଫୁଟ ଲମ୍ବା ଏକ ହାତୀ ଦାନ୍ତରେ ସମସ୍ତ ରାମାୟଣ ବର୍ଣ୍ଣିତ ଘଟଣାମାନ ଖୋଦିତ ହୋଇଅଛି । ଏହି କାର୍ଯ୍ୟ ସମ୍ପୂର୍ଣ୍ଣ ହେବାକୁ ସାର୍ଦ୍ଧ ଦଶବର୍ଷ ଲାଗିଥିଲା । ଟ ୧୦,୦୦୦୯—ଏହାର ମୂଲ୍ୟ ନିରୂପିତ ହୋଇଅଛି ।

୨—ହାତୀ ଦାନ୍ତର ଜାଳିଯୁକ୍ତ ପର୍ଦ୍ଦା [Lattice work]

୩—ଭଙ୍ଗ ପଡ଼ିବା ହାତୀ ଦାନ୍ତର ପଦା ବାଡ଼ [Folding Screen of one ivory] ୭ ଫୁଟ ଲମ୍ବ—ସୁନ୍ଦର କାରୁ କାର୍ଯ୍ୟ ବିଶିଷ୍ଟ—ମୂଲ୍ୟ ଟ ୨୫,୦୦୦୯—

୪—ହାତୀ ଦାନ୍ତ ନିର୍ମିତ ଗୋଟିଏ ସୁସଜ୍ଜିତ ହାତୀ । ହାତୀ ଉପରେ ହାଉଦା ସ୍ଥାପିତ । ହାଉଦା ଉପରେ ମୋଗଲ ସମ୍ରାଟ ଆସୀନ । ମୋଗଲ ସମ୍ରାଟଙ୍କ ହୁକ୍କା ହାତୀ ମାହୁନ୍ତ ଧରିଅଛି । ପ୍ରକୃଷ୍ଟ ଏତେ ଦୂର କାରୀଗରି ଯେ, ଏହି ହୁକ୍କା ନଳଗୁ ନଳୀ [tube] ମଧ୍ୟ ଦେଇ ଦଶିଯାଏ ପୁଣି ହାତୀର ଅଳଂକାର ଓ ଘଣ୍ଟାମାନ ଝୁଲୁ-

ଥିବା ଜଣା ପଡ଼େ । ଏହା ଭାରତୀୟ ହାତୀଦାନ୍ତ ଦ୍ୱାରା ନୁହେଁ । ଅଫ୍ରିକା ଦେଶ ହାତୀ ଦାନ୍ତ ଦ୍ୱାରା । ଭାରତୀୟ ହାତୀ ଦାନ୍ତ ଅପେକ୍ଷା ଅଫ୍ରିକା ହାତୀ ଦାନ୍ତ ବହୁ ମୂଲ୍ୟବାନ । ଭାରତୀୟ ଉତ୍କୃଷ୍ଟ ହାତୀ ଦାନ୍ତ ଏକ ସେରର ମୂଲ୍ୟ ଟ ୧୦୯—ଚଳୁ ଅଫ୍ରିକାରେ ଉତ୍କୃଷ୍ଟ ହାତୀଦାନ୍ତ ଏକ ପଉଣ୍ଡକୁ ଟ ୧୫୯ । ଅଫ୍ରିକା ହାତୀ ଦାନ୍ତ ଭାଙ୍ଗେ ନାହିଁ ଜମ୍ପା ଫାଟ ହଏ ନାହିଁ ।

* ଅଳ୍ପ ଏକ ଭଙ୍ଗ ପଡ଼ଦା ପର୍ଦ୍ଦା ବାଡ଼—ଏଥିରେ ସମସ୍ତ ମହାଭାରତ ଖୋଦିତ ହୋଇଅଛି ପୁଣି ନାନା ରଙ୍ଗରେ ଚିତ୍ରିତ ହୋଇଅଛି । ମୂଲ୍ୟ ଟ ୬୫,୦୦୦୯ ।

—ঃ*ঃ[୦]ঃ*ঃ—

୨—୪—୩୫

## ସଫଦାରଯାଙ୍ଗ ଟୁମ୍ବ

ଏହି ଟୂମ୍ବ ବାଦଶା ଅହମ୍ମଦ ଶାହାଙ୍କ ଉଜୀର ମନସୁର ଅଲିଖାଁ ବା ସଫଦାରଯାଙ୍ଗଙ୍କର ଅଟେ । ଏହା ତାଙ୍କ ପୁତ୍ର ସୁଜାଉଦ୍-ଦୋଲ୍ଲାଙ୍କ ଦ୍ୱାରା ୧୭୫୩ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା । ପ୍ରାୟ ତିନି ଲକ୍ଷ ଟଙ୍କା ଏଥିରେ ବ୍ୟୟିତ ହୋଇଥିଲା । ହୁମାୟୁନ ଟୂମ୍ବ ଅପେକ୍ଷା ଏହା ଆକାରରେ ଶ୍ରେଷ୍ଠ ହେଲେ ସୁଦ୍ଧା ଆଗ୍ରାର ସୁପ୍ରସିଦ୍ଧ ତାଜ ମହଲ ପରେ ନିର୍ମିତ ହୋଇଅଛି । ଆଗ୍ରା ତାଜ ମହଲରେ ଚାରି ପାଖ ମିନରେଟ ଅଛି, ଏଥିରେ କିନ୍ତୁ ନାହିଁ । ଏହାର ଉପର ଡୋମ ବା ଗୋଲ୍‌ଛାତ ମର୍ମର ପଥରରେ ତିଆରି ହୋଇଅଛି । ଚାରି ପାଖର ସାନ ସାନ ମିନରେଟର ଡୋମ ଗୁଡିକ ମଧ୍ୟ ସେହି ପଥରରେ ତିଆରି

ହୋଇଅଛି । ବେଶୀ ମର୍ମର୍ ପଥର ଏଥିରେ ଲାଗି ନାହିଁ । ୧୦୦ ବର୍ଗ ଫୁଟରେ ଏହାର ତଳ ପୁନାଦ ଓ ଗୃହ ପାଖରେ ଅର୍ଚ୍ଚ ହୋଇ ଅଛି । ସଫଦାର୍ ଓ ତାହାଙ୍କ ସ୍ତ୍ରୀଙ୍କ ସମାଧି ଖାଲି ମାଟି ଘୋଡ଼ାହୋଇ ତଳେ ଦର୍ଶକଙ୍କୁ ଦଶିଲା ଭଳି ଅଛି । ଦଶ ଫୁଟ ଉଚ୍ଚରେ ଘର ନିର୍ମାଣ ହୋଇଅଛି । ଏହି ଟୁମ୍ବ ଗୋଟିଏ ଦୁର୍ଗ ଭିତରେ ଅବସ୍ଥିତ । ସଫଦାରଙ୍କ ଜୀବଦଶାରେ ସେ ଏହି ଦୁର୍ଗ ଭିତରେ ରହୁଥିଲେ । ଦୁର୍ଗର ସମସ୍ତ ଲକ୍ଷଣ ଓ ପରିପାଟୀ ଗୃହସ୍ଥ ରହିବା ଢଙ୍ଗରେ ହୋଇଛି । ଏହାର ଚତୁର୍ଦ୍ଦିଗରେ ଚାରିଗୋଟି ବୁରୁଜ (Bastion) ଅଛି—ପଶ୍ଚିମରେ ଜେନାନା ମହଲ, ଉତ୍ତରରେ ବାଦଶାହ ମହଲ, ଦକ୍ଷିଣରେ ମୋତି ମହଲ ଓ ପୂର୍ବରେ ମୂଳ ଗେଟ୍ (Main Gate) ଅବସ୍ଥିତ । ହାତୀ ମାରି ନିପାଇବା ପାଇଁ ଲୁହାଫୁନମାନ ଅଛି ଓ ଗୁପ୍ତ ଦ୍ୱାର ଅଛି । ମାତ୍ର ଘୋଷରା ନାହିଁ । ମୋତି ମହଲରେ ଜନନା ରହନ୍ତି ।

ଉପର କଥିତ ତଳ ଅର୍ଚ୍ଚ-ଘର (Carridors)ଗୁଡିକ ନିତାନ୍ତ ଅପରିଷ୍କାର ଓ ସର୍ବଦା ଧୂଳି-ଅଚ୍ଛନ୍ନ । କିନ୍ତୁ ଉପର ଗୃହମାନ ଅପେକ୍ଷାକୃତ ପରିଚ୍ଛନ୍ନ । ଏହି ଉପର ଗୃହମାନ ଟୁମ୍ବ ଚତୁର୍ଦ୍ଦିଗରେ ବିଦ୍ୟମାନ । ପୂର୍ବେ ବାଳିକାମାନଙ୍କ ବିଦ୍ୟାଳୟ ପାଇଁ ଏହା ଉଦ୍ଦିଷ୍ଟ ଥିଲା । ଏହି ଗୃହମାନଙ୍କ ଉପରେ ପୁଣି ଯେଉଁ ଗୃହମାନ ଅଛି, ତାହା ବାଳକମାନଙ୍କ ବିଦ୍ୟାଳୟ ରୂପେ ବ୍ୟବହୃତ ହେଉଥିଲା । ମୋଗଲ ରାଜତ୍ୱରେ ଟୁମ୍ବମାନ ବିଦ୍ୟାଳୟ ରୂପେ ବ୍ୟବହୃତ ହେଉଥିବା ଉକ୍ତ ରାଜତ୍ୱରେ ଏକ ବିଶେଷତ୍ୱ । ହୁମାୟୁନ ଟୁମ୍ବରେ ମଧ୍ୟ ଏହି ବ୍ୟବହାର ଥିଲା । ସଫଦାର ଅଯୋଧ୍ୟା (Oudh)ରେ ନବାବ

ଥିଲେ । ଲକ୍ଷ୍ନଉରେ ଏହାଙ୍କ ମୃତ୍ୟୁ ଘଟିଲା ଓ ଶବ ଏଠାକୁ ଅଣା ଯାଇଥିଲା ।

ଏହି ଟୁମ୍ବର ତଳ (Flooring) ଲାଲ ଡ଼ାକମ୍ବା ପଥରରେ ନିର୍ମିତ ହୋଇଅଛି—ମର୍ମର ପଥର ନୁହେ । ଉପର କବର କେବଳ ମର୍ମର ପଥରରେ ଖଚିତ କାରୁକାର୍ଯ୍ୟରେ ନିର୍ମିତ ହୋଇଅଛି । ଉପର ଭାଗ ଲାଲ ସ୍ତରକ [Red Plaster]ରେ ଅତି ସୁନ୍ଦର ଦେଖାଯାଏ । କିନ୍ତୁ ସ୍ଥୂଳତଃ କହିବାକୁ ଗଲେ—ଟୁମ୍ବର କାର୍ଯ୍ୟ ଅତି ଉତ୍କୃଷ୍ଟ ନୁହେ । କାରଣ ଅନେକସ୍ଥ ଏବେ ଫାଟି ଯାଉଅଛି ଓ ସ୍ତରକ [Plaster] ଖସି ଯାଉଅଛି । ହୁମାୟୁନ ଟୁମ୍ବ ବାଦଶାହୀ ବା ସମ୍ରାଟ ଯୋଗ୍ୟ ଟୁମ୍ବ ବୋଲି ମନେ ହୁଏ । କିନ୍ତୁ ଏହା ଦେଖିଲା ମାତ୍ରେ ଜଣେ ମନ୍ତ୍ରୀଙ୍କ ଟୁମ୍ବ ବୋଲି ଜଣା ଯିବ । ପ୍ରଥମୋକ୍ତ ଟୁମ୍ବ ନିର୍ମାଣ ପାଇଁ ୧୫ ଲକ୍ଷ ବ୍ୟୟିତ ହୋଇଥିଲା—ଶେଷୋକ୍ତ କେବଳ ୩ ଲକ୍ଷରେ ପୂର୍ଣ୍ଣ ହୋଇଥିଲା ।

ଅମ୍ଭମାନଙ୍କ ଏହି ଟୁମ୍ବ ପରିଦର୍ଶନ କଲେ ଦେଖିଲୁ କେତେ ଜଣ ବ୍ୟକ୍ତି ସରକାର ବାହାଦୁରଙ୍କ ଆଦେଶ ପାଇ ଟୁମ୍ବର ମାନଚିତ୍ର ଲେଖିବାରେ ବ୍ୟସ୍ତଥିଲେ । ପଇଞ୍ଜିମାନ ବଡ଼ ଜୋରରେ ଚଳା ଯାଉଥିଲା । ଶୁଣିଲୁ, ଦିଲ୍ଲୀ ସହରର ସମସ୍ତ ଟୁମ୍ବର ମାନଚିତ୍ର ସେମାନେ ଲେଖିବାକୁ ହେବ ।

——:0:——

# ଭାରତ ସେନାଧ୍ୟକ୍ଷ ଭବନ

ଭାରତ ସେନାଧ୍ୟକ୍ଷଙ୍କ ନିବାସ ଗୃହର ବାହ୍ୟଭାଗରୁ ଫେରି ନେଲି । ସେନାଧ୍ୟକ୍ଷ ଗସ୍ତରେ ଥିବାରୁ ତାଙ୍କ ପ୍ରାସାଦର ଦ୍ୱାର ବନ୍ଦ ଥିଲା । ତାଙ୍କ ନିବାସ ଗୃହ ଆକାରରେ ଖୁବ ଲମ୍ବା ଚଉଡ଼ା, କିନ୍ତୁ ବୈଚିତ୍ର୍ୟ ଦୃଷ୍ଟିରେ ଆକର୍ଷଣୀୟ ନୁହେ । କେବଳ ଏହାର ବିଶେଷତ୍ୱ ଦେଖିଲୁ -ଗୃହ ସମ୍ମୁଖ ଏକ ସ୍ତୂପ ଉପରେ ତିନୋଟି ମିଶ୍ରିତ ଧାତୁ ନିର୍ମିତ (bronze made) ମନୁଷ୍ୟ ମୂର୍ତ୍ତି ବିଦ୍ୟମାନ, ମୂର୍ତ୍ତିମାନଙ୍କ ହସ୍ତରେ ଭଲ୍ଲ—ସମସ୍ତ ସୈନ୍ୟର ବେଶଭୂଷା ପରିଚ୍ଛଦରେ ଅବୃତ୍ତ । ଯୋଧପୁର, ହାଇଦ୍ରାବାଦ ଓ ମହୀଶୂର ଦେଶୀୟ ସୈନ୍ୟର ବେଶରେ ତିନୋଟି ମୂର୍ତ୍ତି ଗଠିତ ହୋଇଅଛି । ଗତ ଜଗତ ବ୍ୟାପୀ ମହାଯୁଦ୍ଧ [World war] ବେଳେ ଉପର୍ଯ୍ୟୁକ୍ତ ରାଜ୍ୟମାନଙ୍କ ସୈନିକମାନେ ବହୁଳ ଭାବରେ ପ୍ରାଣ ଦାନ କରିଥିଲେ । ସାମ୍ରାଜ୍ୟ ରକ୍ଷା ପାଇଁ ଏହି ରାଜ୍ୟମାନଙ୍କର ଆତ୍ମୋତ୍ସର୍ଗ ଭାରତର ତଥା ସମାଜର ଅଳ୍ପ ଗୌରବର କଥା ନୁହେ । ସୁତରାଂ, ଭାରତ ସରକାର ଏହି ତ୍ୟାଗବୀରମାନଙ୍କ ସ୍ମରଣୀ ସହାଣେ ଏହି ମୂର୍ତ୍ତିମାନ ସେନାଧ୍ୟକ୍ଷଙ୍କ ନିବାସ ଗୃହ ସମ୍ମୁଖରେ ସ୍ଥାପନ କରିଅଛନ୍ତି । ଯେପରି କି, ଭାରତ ସରକାରଙ୍କ ସୈନ୍ୟ ପ୍ରତିନିଧି ସାମ୍ରାଜ୍ୟ ପକ୍ଷରୁ ପ୍ରତି ମୂହୁର୍ତ୍ତରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ପାରିବେ । ସ୍ମୃତି ସ୍ତୂପରେ ଇଂରେଜିରେ ଲେଖା ଅଛି ।

"Memorial for Jodhpur, Mysore, Hydrabad Lancers, who fought in the Suez canal, Gaza, Jerusalem, Jordon,

Valley, Haifa, Damascus, Alippo. These represent officers and men 15th Imperial Service cavalry."

ଏହି ସୈନିକ ମୂର୍ତ୍ତିମାନ ତମ୍ବା ଓ ଲୁହା ମିଶ୍ରିତ ଧାତୁ [Bronze]ରେ London Sculptor, Leonard Jennings ଦ୍ୱାରା ଖ୍ରୀ ୧୯୨୨ ରେ ନିର୍ମିତ ହୋଇଅଛି । ମୂର୍ତ୍ତି ଗୁଡ଼ିକ ଅତି ମନୋହର ହୋଇ ଅଛନ୍ତି । ଉଚ୍ଚତାରେ ୮ ବା ୯ ଫୁଟରୁ ନ୍ୟୁନ ହେବ ନାହିଁ ।

୨—୪—୩୫

ଅଜି ପ୍ରାତଃକୃତ୍ୟ ସମାପନ କରି ଭେରି ସାହେବଙ୍କୁ ବିଦାୟ ଦେବାକୁ ଗଲୁ । ଭାରତୀୟ ପ୍ରତିନିଧି ସ୍ୱରୂପ ସମ୍ରାଟଙ୍କ ଜୁବୁଲି ମହୋତ୍ସବରେ ଯୋଗ ଦେବା ନିମନ୍ତେ ଭେରି ସାହେବ ଲଣ୍ଡନ ଯାଉଥିଲେ । ଆମ ଗଞ୍ଜାମ ଜିଲ୍ଲାର ସେ ସବ୍ କଲେକ୍ଟର ରୂପେ ୧୯୧୪ ରେ ଥିଲେ । ସୁତରାଂ, ସେ ଆମ୍ଭମାନଙ୍କ ସୁପରିଚିତ । ବିଦାୟ ସମ୍ଭାଷଣ ପରେ Imperial Delhi Gymkhana club ପରିଦର୍ଶନ କଲୁ । ଦିଲ୍ଲୀ ସହର ବିଶିଷ୍ଟ ବ୍ୟକ୍ତିମାନେ ଏହି ଅନୁଷ୍ଠାନ-ମାନଙ୍କ ସଭ୍ୟ । ସୁତରାଂ ଦିଲ୍ଲୀର ଚୂଡ଼ାନ୍ତ ସଭ୍ୟତାର ଏହା ପ୍ରତୀକ କହିଲେ ଅତ୍ୟୁକ୍ତି ହେବ ନାହିଁ । ମେଜର ଜେନେରଲ୍ ଷେରନ୍ ସନ (Director, Indian Medical Service)ଙ୍କ ସହି ଆମ୍ଭମାନଙ୍କ ଏହିଠାରେ ସାକ୍ଷାତ ହେଲା । ମେଜେର ସାହେବ ଆମ୍ଭ-ମାନଙ୍କର ସୁପରିଚିତ—ଏମନ୍ତ କି ଥରେ ସେ ଶିକାର ନିମନ୍ତେ

ଧର୍ମକୋଟ ଆସିଥିଲେ । ତାଙ୍କ ସାକ୍ଷାତ ପରେ Mr. Milligan M.L.A. Sir Lestic Hudson ଓ Mr. Jamesଙ୍କୁ ଦେଖିଲୁ ।

ମିଃ ମେଲ୍‌ଗ୍ୟାନ ଅମୃତ ପ୍ରବତନ ପରିଚିତ । ମିଃ ହାଡ୍‌ସନ ବ୍ୟବସ୍ଥା ପରିଷଦ—ଇୟୁରେପିଅନ ଦଳର ନେତା, ମିଃ ଜେମସ୍ ମାନ୍ଦ୍ରାଜରୁ ଆସି ଅଛନ୍ତି । ଏମାନଙ୍କ ସହ ଅଳାପ ହେଲା ପରେ ଜୁମ୍ମା ମସଜିଦ ପରିଦର୍ଶନ ପାଇଁ ଗଲୁ ।

—:*[୦]*:—

## ଯୁମ୍ମା ମସ୍‌ଜିଦ୍

ଭାରତରେ ଯେତେ ଗୋଟି ମସ୍‌ଜିଦ୍ ମୋଗଲ ସାମ୍ରାଜ୍ୟର କୀର୍ତ୍ତି-ସ୍ତମ୍ଭ ସ୍ୱରୂପ ଓ ମୁସଲମାନ, ଓ ହିନ୍ଦୁ ସମସ୍ତ ଭାରତବାସୀଙ୍କ ଜୀବନ ଜାଗ୍ରତ କରୁଅଛି ସେମାନଙ୍କ ମଧ୍ୟରୁ ଯୁମ୍ମା ମସଜିଦ ଅତୀବ ମନୋହର । ସାହାଜାନଙ୍କ ବଡିଏ କଳ୍ପନାର ଅନୁରୂପ ଏହି ମସଜିଦ ନିର୍ମିତ ହୋଇଅଛି । କଥିତ ଅଛି ଏହି ମସଜିଦ ନିର୍ମାଣ କାର୍ଯ୍ୟ ଖ୍ରୀ ୧୬୪୪ ଠାରୁ ଆରମ୍ଭ ହୋଇ ୧୬୫୮ ଖ୍ରୀଷ୍ଟାବ୍ଦରେ ଶେଷ ହୋଇଥିଲା । ଆରମ୍ଭ ଠାରୁ ଶେଷ ପର୍ଯ୍ୟନ୍ତ ଦୈନିକ ৫০০০ ଶ୍ରମିକ ଏହି କାର୍ଯ୍ୟରେ ଲାଗିଥିଲେ ।

ମସଜିଦର ଚାରିପାଖରୁ ୩୬ ଗୋଟି ଲେଖାଏଁ ସୋପାନ ଅଛି । ଦର୍ଶକମାନେ ଉପରକୁ ଗଲେ ଏକାପଣ ଫିକ ଦେବାକୁ ପଡେ । ପୁଣି କୋଟା ବାହାରକୁ ଯିବାକୁ ହୁଏ ।

ଜୁମ୍ମା-ମସଜିଦ୍ ପ୍ରାଙ୍ଗଣ ବଡ଼ ପ୍ରଶସ୍ତ । ଏଥିରେ ପ୍ରାୟ ୨୫୦୦୦ ଲୋକ ଉପାସନା କରିପାରନ୍ତି । ମସଜିଦ ଉପରେ

୪ହଜାର୍ ଲୋକବସି ଉପାସନା କରିବାପାଇଁ ଯଥେଷ୍ଟ ସ୍ଥାନଅଛି । ହାର ପୁଣି ପ୍ରାଙ୍ଗଣର ସମସ୍ତ ଲାଲଡାଳମ୍ବାପଥରରେ ନିର୍ମିତ ହୋଇ ଅଛି । ଖାସ ମସଜିଦର ଅନ୍ତର୍ଭାଗ, ଛାତଦେଶ ଓ ତିନିଗୋଟି ଡ଼ୋମ—ସମସ୍ତ ମର୍ମରପଥରରେ ନିର୍ମିତହୋଇ ଅଦ୍ଭୁତରୂପ ବୈଚିତ୍ର୍ୟ ସମ୍ପାଦନ କରୁଅଛି । ତିନିଗୋଟି ଡୋମରୁ ଦୁଇପାର୍ଶ୍ୱର ଦୁଇଟି ଡୋମ ଅପେକ୍ଷାରେ ଶ୍ରେଷ୍ଠ ଓ ମଧ୍ୟସ୍ଥିତ ଡ଼ୋମ ଅପେକ୍ଷାକୃତ ବଡ଼ । ଦୁଇଗୋଟି ମିନାରେଟ ଅଛି—ଉପରଭାଗ ସମସ୍ତ ମର୍ମର ପଥରରେ ନିର୍ମିତ ଓ ସମୁଦାୟ ବାହ୍ୟ ଭାଗ ଲାଲ ଡାଳମ୍ବା ପଥର ସହିତ ମଧ୍ୟେ ୨ ଶୁଭ୍ର ମର୍ମର ସମାବେଶରେ ଚିତ୍ତ ଆକର୍ଷଣ କରୁଅଛି ।

ଜୁମା ମସଜିଦର ଅବସ୍ଥାନ ଦିଲ୍ଲୀସହରର ସର୍ବୋଚ୍ଚ ସ୍ଥାନରେ ହୋଇଥିବାରୁ ସହରର ପ୍ରାୟ ସମସ୍ତଭାଗରେ ଏହା ଦୃଷ୍ଟିଗୋଚର ହୁଏ । ଏହାର ପ୍ରାଙ୍ଗଣର ଏକାଂଶ ଆବରଣ କରିବାପାଇଁ ବନ୍ଦୋବସ୍ତ ଅଛି । ମହରମ ପ୍ରଭୃତି ଉତ୍ସବ ଅନୁଷ୍ଠାନ ସମୟରେ ଏହି ଆବରଣ ଆବଶ୍ୟକ ହୋଇଥାଏ । ପର୍ଦାନସୀନ ରମଣୀମାନେ ଏହି ଆବରଣ ମଧ୍ୟରେ ରହି ଉପାସନା କରନ୍ତି ।

ମସଜିଦ ଦ୍ୱାରପାଶରେ ମଣ୍ଡପ ପରି ସ୍ଥାନଅଛି । ମୁସଲମାନ ଯାତ୍ରିମାନେ ପ୍ରାୟଶଃ ଏହିଠାରେ ରହନ୍ତି । ଜୁମା ମସଜିଦ ଯେଉଁପରି ପବିତ୍ରସ୍ଥଳ, ସେହିପରି ବାସଯୋଗ୍ୟ, ସୁତରାଂ ମୁସଲମାନ ଯାତ୍ରୀମାନେ ଏହିଠାରେ ରହିବା ସୁଖକର ମନେକରିବା ସ୍ୱାଭାବିକ ମାତ୍ର । ଆମ୍ଭେମାନେ ଯେଉଁଦିନ ମସଜିଦ୍ ପରିଦର୍ଶନ କଲୁ,

ସେହିଦିନ ଦୁଇଜଣ ବିଦେଶାଗତ ମହିଳା ଏହି ପ୍ରକାଣ୍ଡ ପ୍ରାସାଦ ଦେଖିବା ପାଇଁ ଆସିଥିଲେ । ଜଣେ ଜର୍ମାନ ଓ ଅନ୍ୟଜଣକ Sezechoslavakia ଦେଶରୁ ଆସିଥିଲେ । ସେମାନେ ଏତେ ମୁଗ୍ଧ ହୋଇ ଦେଖୁଥିଲେ ଯେ, ଯେ କୌଣସି ଭାରତବାସୀ ଏଥିରେ ଅହଂକାର କରିବା କଥା । ଜଗତର ଭ୍ରମଣକାରୀମାନେ ଭାରତର ଏହି ସ୍ମୃତି ବିଜଡ଼ିତ ସୌଧମାନ ଦେଖି ଭାରତର ଅତୀତ ସଭ୍ୟତାର ଭୂୟୋଭୂୟଃ ପ୍ରଶଂସା କରିଥାନ୍ତି ।

ମସଜିଦ୍ ଚତୁଃପାର୍ଶ୍ୱରେ ଯେଉଁ ମଣ୍ଡପର କଥା ଉଲ୍ଲେଖ କରାଗଲା, ସେଥିର ଏକପାର୍ଶ୍ୱରେ ମସଜିଦ ପ୍ରକାରରେ ଏକ ଗୋଟି ଘରଅଛି । କଷ୍ଟି କାଠରେ କେବଳ ନିର୍ମିତ ହୋଇଅଛି । ଏହା ଉପରେ ଇମାମ୍ମାନେ ଏହି କେତୋଟି ଦ୍ରବ୍ୟ ଦେଖାଯାଉ ଅଛି ।

୧ ମହମ୍ମଦଙ୍କ ଜାମାତା ହଜରତ୍ ଅଲିଙ୍କ ଦ୍ୱାରା ଲିଖିତ ହରିଣ ଚମଡ଼ାରେ କୋରାନ୍ ।

୨ ମହମ୍ମଦଙ୍କ ଶ୍ମଶ୍ରୁର ଏକ ଲାଲ କେଶ ଏକ ରୂପାଡବାରେ କାଚ ବନ୍ଦ ହୋଇ ଅଛି ।

୩ ମହମ୍ମଦଙ୍କ ବାମପାଦର ଜୋତା ।

୪ ପଥର ଖୋଦିତ ମହମ୍ମଦଙ୍କ ପଦଚିହ୍ନ ।

୫ ଖ୍ରୀ ୧୮୧୪ ରେ ଜେନେରଲ କ୍ରିଏଚ (General Creach)ଙ୍କ ହସ୍ତାକ୍ଷରିତ ଚିଠି—ସାହେବ ଏହି ମସଜିଦ୍ ଦେଖି ଆସିଥିଲେ ।

ସୁଣିଲୁ, ଏହି ମସଜିଦ ନିର୍ମାଣ କରିବା ପାଇଁ କେବଳ ୧୦ଲକ୍ଷ ମୁଦ୍ରା ଲାଗିଥିଲା । ଏଥିରୁ ଜଣାଯାଏ ଯେ ସମ୍ପ୍ରତି ସେତ ପାଇଁ କେତେ ମୁଦ୍ରା ବ୍ୟୟିତ ହୋଇଥିବ ।

ଜୁମା ମସଜିଦ୍ ଦର୍ଶନ ପରେ ସପରିବାର ବ୍ୟବସ୍ଥା ପରିଷଦ ଦେଖିବାକୁ ଯାଇଥିଲୁ । ଭାରତରେ ସ୍ୱାଧୀନ ଅଧିକାରିତା ନେଇ 'କ' ଉପରେ ଅଧିକ ଗୁରୁ ପଡାଇବା ସହାସେ ପଣ୍ଡିତ ନୀଳକଣ୍ଠ ଦାସ ପ୍ରସ୍ତାବ ଆଗତ କରିଥିଲେ । ତାଙ୍କ ବ୍ୟବରେ ମିଃ ସତ୍ୟଗନ୍ ବକ୍ତୃତା ଭାଷଣ ଦେଇଥିଲେ ।

୮—୪—୩୪

ଅଦ୍ୟ ପୂର୍ବାହ୍ନ ଶ୍ରୀଯୁକ୍ତ ଭୁବନାନନ୍ଦ ଦାସଙ୍କ କଥାକୁ ମୁଁ ଯାଇଥିଲି । ବଡ଼ଲାଟଙ୍କ କଥା ଭାରତୀୟ ବ୍ୟବସ୍ଥା ପରିଷଦର ଅଧ୍ୟକ୍ଷ ହର୍ଷିତ୍ ଏବଂ ଶ୍ରୀଯୁକ୍ତ ସର୍ଦ୍ଦାର ଶାନ୍ତ ସିଂଙ୍କ ସହ ଏଥର ତାଙ୍କ ମୋର ସାକ୍ଷାତ ହେଲା । ଶାନ୍ତ ସିଂଙ୍କ ନୈତିକତା ସମ୍ବନ୍ଧେ ଭାରତର ଖବର ଲେଖୁଥିବା ବ୍ୟକ୍ତିମାନେ ଜଣିଥିବେ । ସୁତରାଂ ତାଙ୍କ ସମ୍ବନ୍ଧେ ବିଶେଷ ଲେଖିବା ନିଷ୍ପ୍ରୟୋଜନ । ଭୁବନାନନ୍ଦ ବାବୁଙ୍କ ବସାରେ 'ଇଣ୍ଡିଆନ୍' ପତ୍ରିକାର ସମ୍ପାଦକ ସେର୍ଦ୍ଦାର ଦଉଲ୍‌ତ ସିଂଙ୍କ ସହ ମଧ୍ୟ ସାକ୍ଷାତ ହେଲା । 'ଇଣ୍ଡିଆନ୍' ଦିଲ୍ଲୀର ଏକ ପ୍ରସିଦ୍ଧ ଉର୍ଦ୍ଦୁ ସାପ୍ତାହିକ । ସତ୍ୟ ଓ ନିରପେକ୍ଷ ସମ୍ବାଦ ପ୍ରକାଶ କରିବା ସହାସେ କେବଳ ଦିଲ୍ଲୀରେ ନାହିଁ ଭାରତ ବ୍ୟାପୀ ରାଜନୈତିକ ମହଲରେ ଏହାର ଯଥେଷ୍ଟ ସୁଖ୍ୟାତି ଅଛି । ସର୍ଦ୍ଦାରଙ୍କ ଜନ୍ମ ଜମ୍ମୁ ରାଜ୍ୟ । ଦେଶୀୟ ଆନ୍ଦୋଳନମାନଙ୍କର

ଗଭର୍ଣ୍ଣର ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କ କାର୍ଯ୍ୟର ସ୍ୱାଧୀନ ସୂକ୍ଷ୍ମ ଆଲୋଚନା କରି ଯେଉଁମାନେ ନିର୍ଭୟରେ ମତ ଦେଉଛନ୍ତି, ସେହିମାନେହିଁ ପ୍ରକୃତ ସାମ୍ୟବାଦୀ । ବର୍ତ୍ତମାନ କିଂ ସେହିପରି ଲୋକ । ଭୋପାଳ ନବାବ ପତ୍ନୀ ମୋହନଲାଲଙ୍କ, ଯେବେ ଜୋର୍ଦ୍ଦାର ହତ୍ୟା ଚକ୍ରାନ୍ତ ଉଦ୍ଘାଟନ ଦେଇଥିବା କଥା ଏହି ପତ୍ରିକାରେ ପ୍ରକାଶିତ ହୋଇଥିଲା । ଭୋପାଳ ନବାବ ଏହି ଲେଖାର ପ୍ରତିବାଦ ସ୍ୱରୂପ ଅଦାଲତରେ ମୋକଦ୍ଦମା ଦାଏର କରିଅଛନ୍ତି । ଦେଶୀୟ ରାଜା ରାଜନ୍ୟମାନଙ୍କ ରକ୍ଷାପାଇଁ ଭାରତ ସରକାର ଯେଉଁ Princes' Protection Bill ପ୍ରଣୟନ କରିଅଛନ୍ତି, ନବାବ ସାହେବ ସେହି ଧାରାରେ ଅଭିଯୋଗ କରିଅଛନ୍ତି । ଖ୍ରୀ ୧୯୨୯ ଠାରୁ ଅଦ୍ୟ ପର୍ଯ୍ୟନ୍ତ ଏହି ମକଦ୍ଦମା ଶେଷ ହୋଇ ପାରିନାହିଁ । ଏଥି ମକଦ୍ଦମା ସମ୍ପର୍କରେ ସର୍ଦ୍ଦାର ଶାର୍ଦ୍ଦୁଳ ସିଂଙ୍କ ପରାମର୍ଶ ନେବା ପାଇଁ ସର୍ଦ୍ଦାରଜୀଙ୍କ ପରଗନାର ଉପବେଶନ ଶୁଣିଲି । ଏହି ମକଦ୍ଦମାରେ ନବାବଙ୍କ ପକ୍ଷରୁ ପ୍ରାୟ ୨ଲକ୍ଷ ଖରଚ ହେଲଣି ପୁଣି ସର୍ଦ୍ଦାରଜୀଙ୍କର ୨୦,୦୦୦ ପର୍ଯ୍ୟନ୍ତ ହେଲଣି । ତଥାପି ଉଭୟ ପକ୍ଷ ଆତ୍ମରକ୍ଷା ପାଇଁ ତତ୍ପର ।

ଅଦ୍ୟ ୧୧ଘଣ୍ଟା ବେଳେ ରାଜାସାହେବ ଭାରତ ବଡ଼ଲାଟଙ୍କ ସହ ସାକ୍ଷାତ କରିଥିଲେ । କଥାବାର୍ତ୍ତା ମଧ୍ୟରେ ସନାତନୀମାନଙ୍କୁ ଭବିଷ୍ୟତ ଶାସନରେ ପୃଥକ ସ୍ଥାନ ଦେବାପାଇଁ ରାଜାସାହେବ ଜଣାଇଥିଲେ । ହିନ୍ଦୁ ଓ ମୁସଲମାନ ନାମରେ ଦୁଇଗୋଟି ସମ୍ପ୍ରଦାୟ ସ୍ୱାର୍ଥରୁ ସନାତନୀମାନଙ୍କ ପୃଥକ ସ୍ୱାର୍ଥ ଥିବା କଥା ବଡ଼ଲାଟ ବୁଝି ନଥିଲେ । ହିନ୍ଦୁ ମୁସଲମାନ ପ୍ରସଙ୍ଗ ନେଇ ଭାରତୀୟ ରାଜନୀତି

କ୍ଷେତ୍ରରେ ଅଦ୍ୟପର୍ଯ୍ୟନ୍ତ ଯେଉଁ ବନ୍ଦୋବସ୍ତ ଘଟୁଅଛି, ସେଥିମଧ୍ୟରେ ସନାତନୀ ହିନ୍ଦୁର କୌଣସି ସମ୍ପର୍କ ନାହିଁ, ସୁତରାଂ ପୃଥକ୍ ସ୍ଥାନ ଦାବୀ ହୋଇଥିଲା । ଭାଇସରାୟ ଯେଉଁ ଉତ୍ତର ଦେଇଥିଲେ ତାହା ପ୍ରୀତିକର ବା ଆଶାଜନକ ବୋଲି କୁହାଯାଇ ନପାରେ । ସେ କହୁଥିଲେ ଯେ ନିର୍ବାଚନ ମଣ୍ଡଳରେ ସନାତନୀମାନେ ଠିଆହୋଇ ଉପୁଜିବ କରିପାରନ୍ତି । ପୃଥକସ୍ଥାନ ଦିଆନଯିବା କଥାର ଏହା କେବଳ ପରୋକ୍ଷ ଅଭିବ୍ୟକ୍ତି ମାତ୍ର ।

...—...

## କାଉନସିଲ ଚେମ୍ବର

କାଉନସିଲ ଚେମ୍ବର ସମ୍ବନ୍ଧେ ଅଳ୍ପସୂଚନା ଦିଆଯାଉଅଛି । ଏହା ଏକ ସୁନ୍ଦର ଗୋଲଗୃହ । ଚତୁର୍ଦ୍ଦିଗରେ ସ୍ତମ୍ଭମାନ ରହିଅଛି । ତିନିଗୋଟି ବିଭାଗ ଦ୍ୱାରା ଏହା ବିଭକ୍ତ ହୋଇଅଛି । ଯଥାଃ—

(୧) କାଉନ୍‌ସିଲ ଚେମ୍ବର, (୨) କାଉନ୍‌ସିଲ ଅବ୍‌ଷ୍ଟେଟ ଓ (୩) ପ୍ରେସିଡେନ୍‌ସି ଚେମ୍ବର । ଏହି ତିନିଗୋଟି ଅନୁଷ୍ଠାନ ଭାରତଶାସନର ତିନିଗୋଟି ପ୍ରଧାନତମ ଅନୁଷ୍ଠାନ । ମଧ୍ୟଦେଶରେ ଗୋଟିଏ ବିରାଟ ପ୍ରାଙ୍ଗଣ ଅଛି । ପୁଷ୍ପଲତାରେ ପୁଣି ପ୍ରସ୍ରବଣରେ ପ୍ରାଙ୍ଗଣର ଶୋଭା ବର୍ଦ୍ଧନ ହେଉଅଛି । ସାଧାରଣତଃ ଏସେମ୍ବ୍ଲି ସଂପୃକ୍ତ ଉଦ୍ୟାନସମ୍ମିଳନ (Garden party) ମାନ ଏହି ଉଦ୍ୟାନ ପ୍ରାଙ୍ଗଣରେ ହୋଇଥାଏ ।

୧୯୩୨ ଖ୍ରୀଷ୍ଟାବ୍ଦରେ ଏହି ବ୍ୟବସ୍ଥା ପରିଷଦରେ ବୋମା ପଡ଼ିଥିବା ପାଠକମାନେ ବୋଧହୁଏ ଜାଣିଥିବେ । ପରିଷଦ୍ ସଭାବେଳେ ମେମ୍ବରମାନଙ୍କ ସୁପାରିସରେ ଦର୍ଶକମାନେ କେବଳ ଭିତରକୁ ଯିବାକୁ ହୁଏ । ସାଧାରଣ ଓ ବିଶେଷ [Ordinary & Distinguished] ଭେଦରେ ଦୁଇଶ୍ରେଣୀର ଦର୍ଶକମାନଙ୍କ ସକାଶେ ଭିନ୍ନ ଭିନ୍ନ ସ୍ଥାନଅଛି ।

——:o:——

## ସେକ୍ରେଟେରୀଏଟ

ସେକ୍ରେଟେରିଏଟ୍ ଗୃହ ଖୁବ୍ ପ୍ରକାଣ୍ଡ । ଦୁଇପାର୍ଶ୍ୱରେ ଏକାପରି ଡ଼ୋମ ଥାଇ ଗୃହମାନ ନିର୍ମିତ । ମଧ୍ୟଦେଶରେ ଭାଇସରାୟ ରହିବା ଗୃହରାସ୍ତା । ଭାଇସରାୟଙ୍କ ନିବାସ ଗୃହକୁ ଯିବାକୁ ହେଲେ ବାମପାର୍ଶ୍ୱରେ ନିମ୍ନ ବିଭାଗମାନ ଦେଖିବାକୁ ହୁଏ ।

[କ] ସର୍ ହେନେରି କ୍ରେଇକ୍ (Sir Henry Craik) ଙ୍କ ଅଧୀନସ୍ଥ Home Education & Reform Office

[ଖ] Sir Josiph Bhore ଙ୍କ ଅଧୀନସ୍ଥ Commerce ବା ବାଣିଜ୍ୟ ବିଭାଗ ।

[ଗ] Commander in Chiefଙ୍କ ଅଧୀନସ୍ଥ ସୈନିକ ବିଭାଗ ।

[ଘ] Sir Glaney ଓ Mr. Metcalf ଙ୍କ ଅଧୀନସ୍ଥ Foreign and Political ଏଭ୍ଲାର ଅଧକ୍ଷ ସ୍ୱପୃ• ଭାଇଷ୍ ସ୍ୱପୃ ।

ଦକ୍ଷିଣ ପାର୍ଶ୍ୱରେ ନିମ୍ନବିଭାଗମାନ ଦେଖିବାକୁ ହୁଏ ।

(କ) ସର୍ ଏନ୍. ଏନ୍. ସରକାରଙ୍କ ଅଧିନସ୍ଥ ଲ' ବିଭାଗ ।

[ଖ] ସର୍ ଫ୍ରାଙ୍କ ନୋଏସ୍ [Sir Fank Noyce] ଅଧୀନସ୍ଥ Industry & Labour

[ଗ] Sir Henry Grissଙ୍କ ଅଧୀନସ୍ଥ Finance

— ঃ*ঃ[ ୬ ]*ঃ —

# ଦିଲ୍ଲୀରୁ ବିଦାୟ

୮—୪—୩୫

ଅପରାହ୍ଣ ୫-୩୦ ଘଣ୍ଟାବେଳେ Grand Trunk Express ଯୋଗେ ଆମ୍ଭେମାନେ ମଥୁରା ଉଦ୍ଦେଶ୍ୟରେ ବାହାରିଲୁ । ମଥୁରା ପ୍ରବେଶ ପୂର୍ବରୁ ଆମ୍ଭମାନଙ୍କ ଜୀବନ ଏକପ୍ରକାର 'ଦିଲ୍ଲୀ-ଗତ ହୋଇଥିଲା କହିଲେ ଅତିରଞ୍ଜିତ ହେବନାହିଁ । ମୁଁ ଏହିଠାରେ କହିରଖିବା ଉଚିତ ଯେ ଦିଲ୍ଲୀ ପରିଦର୍ଶନ ଏହାହିଁ ମୋର ପ୍ରଥମ । 'ନଗରେଷୁ ଦିଲ୍ଲୀ' ବୋଲି କେବଳ ଯେତିକି ଲୋକ ମୁଖରୁ ଶୁଣିଥିଲି, ସେତିକି,ବାସ୍ତବିକ କି ପ୍ରାଚୀନ, କି ଅଧୁନିକ ସବୁଯୁଗ୍ରର ଦିଲ୍ଲୀ ନଗର ମାନଙ୍କର ମଧ୍ୟରେ ଶ୍ରେଷ୍ଠବୋଲି ପ୍ରମାଣିତ ହୋଇପାରେ । ଭାରତର ସମସ୍ତ ଉତ୍ଥାନପତନପାଇଁ ଦିଲ୍ଲୀକେବଳ ଦାୟୀ । ପାଣ୍ଡବମାନଙ୍କ ଯୁଗରୁ ଆରମ୍ଭ କରି ବ୍ରିଟିଶ ରାଜତ୍ୱର ଅଜଯୁଦ୍ଧା ଯେଉଁ ସମସ୍ତ ରାଜନୈତିକ ଘଟଣା

-ମାନ ଘଟିଅଛି ଦିଲ୍ଲୀନଗରୀ ସେସବୁ ଦେଖିଅଛି । ଦିଲ୍ଲୀ ଅତି ପ୍ରାଚୀନ ନଗର—ଆମ୍ଭେମାନେ ବର୍ତ୍ତମାନ ଯେଉଁ ଦିଲ୍ଲୀ ଦେଖୁଥାଉଁ ତାହା ଅଷ୍ଟମଦିଲ୍ଲୀ ବା ବୃଟିଶ ଦିଲ୍ଲୀ । ଭିନ୍ନ ସମ୍ରାଟଙ୍କ ଶାସନ ଦୃଷ୍ଟିରୁ ଦିଲ୍ଲୀସହରକୁ ଅଠଗୋଟି ବିଭାଗ କରାଯାଇପାରେ । ଯଥା:

[୧] ପାଣ୍ଡବ ଦିଲ୍ଲୀ [୨] ପୃଥ୍ୱୀରାଜ ଦିଲ୍ଲୀ [୩] ତୋଗଲକ୍ ଦିଲ୍ଲୀ [୪] ଚରାଗ ଦିଲ୍ଲୀ [୫] ହୁମାୟୁନ୍ ଦିଲ୍ଲୀ [୬] ଅକବର ଦିଲ୍ଲୀ [୭] ସାହାଜାହାନ୍ ଦିଲ୍ଲୀ ଓ [୮] ବୃଟିଶ ଦିଲ୍ଲୀ । ଏହି ଅଠଗୋଟି ଦିଲ୍ଲୀ ବାରମାଇଲ ପରିକ୍ରମାରେ ସ୍ଥାପିତ ହୋଇଅଛି । ଭାରତ ସରକାର ଦିଲ୍ଲୀ ସହରର ପ୍ରାଚୀନ ମହତ୍ୱ ଉପଲବ୍ଧି କରି ୧୯୧୧ ଖ୍ରୀଷ୍ଟାବ୍ଦ ଠାରୁ ଭାରତର ରାଜଧାନୀ ସ୍ୱରୂପ ଏହାକୁ ମନୋନୀତ କରିଅଛନ୍ତି । ଦିଲ୍ଲୀର ଅନେକ ପୌରାଣିକ ଓ ଐତିହାସିକ ନାମ ମଧ୍ୟ ଅଛି । ଯଥା.—ଖାଣ୍ଡବୀ ପୁରୀ, (ଏଠାରେ ଖାଣ୍ଡବବନ ଥିବା କଥିତହୁଏ) ଯୋଗିନୀପୁରୀ, (ଯୋଗିନୀ ମାୟା କର୍ତ୍ତୃକ ନିର୍ମିତ) ଇନ୍ଦ୍ରପ୍ରସ୍ଥ, କାଞ୍ଚନ ପୁରୀ; ଲକ୍ଷ୍ମୀପୁରୀ, ଦିଲ୍ଲୀପୁରୀ, ସାହାଜାହାନାବାଦ । ଉପରୋକ୍ତ 'ଦିଲ୍ଲୀ ପୁରୀ' ନାମରୁ ଏବେସୁଦ୍ଧା ଏହି ନଗରୀ 'ଦିଲ୍ଲୀ' ନାମରେ ଅଭିହିତ ହେଉଅଛି । ଦିଲ୍ଲୀନଗରୀରେ ବର୍ତ୍ତମାନ ଯେଉଁ ବିରାଟ ଧ୍ୱଂସମାନ ନୟନ ଗୋଚର ହୁଏ, ସେ ସମସ୍ତ ଉପରୋକ୍ତ ନାମିତ 'ଦିଲ୍ଲୀ'ମାନଙ୍କର ଅବଶେଷ ମାତ୍ର ।

ପ୍ରଥମେ ଲେଖିଅଛି, ସ୍କନ୍ଦପୁରାଣ ଓ ଇନ୍ଦ୍ରପ୍ରସ୍ଥ ମହାତ୍ମ୍ୟରୁ ଜଣାଯାଏ ଯେ 'ମାୟା' ନାମ୍ନୀ ଜଣେ ଯୋଗିନୀ ଦ୍ୱାରା ସର୍ବପ୍ରଥମେ ଏହା ନିର୍ମିତ ହୋଇଥିଲା । ପାଣ୍ଡବମାନଙ୍କ ହାତରେ ଏହାର ପ୍ରଥମ ଅବସ୍ଥିତି ଥିଲା । କ୍ରମେ ଏହାର କଳେବର ବୃଦ୍ଧିହୋଇ ବର୍ତ୍ତମାନ

ଏହିପରି ହୋଇଅଛି । ମହାରାଜ ଯୁଧିଷ୍ଠିର ଏହି ନଗରୀରେ ମହା-ଯଜ୍ଞ କରିବା ପୂର୍ବରୁ ଦଶସହସ୍ର ବ୍ରାହ୍ମଣ ଭୋଜନ ଅନୁଷ୍ଠାନ କରିଥିଲେ ।

ଯୁଧିଷ୍ଠିରଙ୍କ ରାଜଧାନୀ ହେବାପୂର୍ବରୁ ଏହା ଖାଣ୍ଡବବନ ରୂପେ ଥିବା ଜଣାଯାଏ । ଅଗ୍ନିଙ୍କ ଅନୁରୋଧ କ୍ରମେ ଶ୍ରୀକୃଷ୍ଣଙ୍କ ସହ ଅର୍ଜୁନ ଏହି ବନ ଦଗ୍ଧ କରିଥିଲେ । ତତ୍ପୂର୍ବରେ ଏହା ଋଷିମାନଙ୍କ ତପୋବନ ଥିଲା । ଶେଷରେ ଏହି ପବିତ୍ରତା ଦୃଷ୍ଟିରେ ମହାରାଜ ଯୁଧିଷ୍ଠିର 'ମାୟା ଯୋଗିନୀ ଦ୍ୱାରା ନଗରୀ ନିର୍ମାଣ କରାଇ ମହାରାଜତ୍ୱ ଏହି-ଠାରେହିଁ ଆରମ୍ଭ କଲେ ।

ଦିଲ୍ଲୀନଗରୀ ଭାରତର ସମସ୍ତ ଉତ୍ଥାନ ପତନ ଦେଖିଅଛି କେତେ ରଣଦୁନ୍ଦୁଭି, କେତେ ବୀରଗର୍ଜନ, କେତେ ଆର୍ତ୍ତନାଦ ଶୁଣିଅଛି ତାହାର କଳନା ନାହିଁ । ବାରବାମା ପରି ଆନନ୍ଦରେ ଉତ୍ଫୁଲ୍ଲ ହୋଇଅଛି, କିନ୍ତୁ ଦୁଃଖରେ କାତର ହୋଇନାହିଁ । ଯେ ବୀର, ଯେ ଯୋଗ୍ୟ ତାହାକୁହିଁ ନିଜର ପବିତ୍ର କୋଳରେ ସ୍ଥାନଦେଇ ଭାରତର ଭାଗ୍ୟ ନିୟାମକ ରୂପେ ବରଣ କରିଅଛି ।

ବର୍ତ୍ତମାନ ନୂତନ ଦିଲ୍ଲୀ ସମ୍ବନ୍ଧେ ସାଧାରଣ ସୂଚନା ଦିଆଯାଉ । ନୂତନଦିଲ୍ଲୀ ନିର୍ମାଣରେ ପ୍ରାୟ ୬୦ କୋଟି ମୁଦ୍ରା ବ୍ୟୟିତ ହୋଇଅଛି । ସେଥିରୁ ୧୪କୋଟି କେବଳ ଗୃହନିର୍ମାଣରେ ବ୍ୟୟିତ ହୋଇଅଛି । ଅବଶିଷ୍ଟ ୬କୋଟି ଜଳ, ଆଲୁଅ ଓ ରୋଡ଼ ନିର୍ମାଣ ପ୍ରଭୃତି କାର୍ଯ୍ୟରେ ବିନିଯୋଗ ହୋଇଅଛି । ନୂତନ ଦିଲ୍ଲୀର ନିର୍ମାଣ ପରିପାଟୀ ଯେଉଁ-ପରି ଆଧୁନିକ, ସେହିପରି ବିଚିତ୍ର । ପ୍ରଶସ୍ତ ରାଜପଥ ସିଧା ଓ ସକଣ୍ଟା

ପାଲଥ । ରାଜପଥ ପାର୍ଶ୍ୱମାନଙ୍କରେ ଦୁଇଶ୍ରେଣୀ ଆଲୋକ ସ୍ତମ୍ଭ ବିଦ୍ୟମାନ । ପ୍ରତ୍ୟେକ ରାଜପଥର ନାମ ଦିଆଯାଇଅଛି । ନୂତନ ଦିଲ୍ଲୀର ଗୃହ ସେକ୍ରେଟରିଏଟ, ବାହ୍ୟ ଶୋଭା ମଧ୍ୟ ସେହିପରି ସୁନ୍ଦର । ମଇଦାନର ଘାସମାନ ଯନ୍ତ୍ର ଦ୍ୱାରା କଟାଯାଏ ପୁଣି ପାଇପ୍ ଦ୍ୱାରା ଜଳ ସେଚନ ହୁଏ ।

"ଯୁଦ୍ଧ-ସ୍ମୃତି" (War Memorial) ଦର୍ଶକମାନଙ୍କର ଗୋଟିଏ ଆକର୍ଷଣୀୟ ଅନୁଷ୍ଠାନ । ଏଥିରେ ଛ ଲକ୍ଷ ଟଙ୍କା ବ୍ୟୟିତ ହୋଇଅଛି । ଲାଲ ରାଜପଥର (Red Road) ପାର୍ଶ୍ୱରେ ଏହା ଅବସ୍ଥିତ । ବଡ଼ଲାଟଭବନ ଏହି ଠାରୁ ସ୍ପଷ୍ଟ ଦିଶେ । ଲାଲ ରାଜପଥ ଦେଇ ଭୂତପୂର୍ବ ଭାରତ ସମ୍ରାଟ ପଞ୍ଚମ ଜର୍ଜ ଦରବାର ଭବନକୁ ଯାଇଥିଲେ । ସୁତରାଂ ଏହାର ବୈଶିଷ୍ଟ୍ୟ ସମସ୍ତେ ସ୍ୱୀକାର କରିବେ । Cannought, place କନଟ୍ପ୍ଲେସରେ ନୂଆଦିଲ୍ଲୀର ସମସ୍ତ ବିଶିଷ୍ଟ ଦୋକାନମାନ ଅଛି । ହୋଟେଲ ମଧ୍ୟ ଏହିସ୍ଥାନରେ ସ୍ଥାପିତ ହୋଇଅଛି । ସେଥିମଧ୍ୟରୁ Cecil Hotel, Western Hotel,, Maiden Hotel ପୁଣି The Indian Hotel ଭାରତର ଅନ୍ୟାନ୍ୟ ବିଶିଷ୍ଟ ସହରମାନଙ୍କ ପରି ଦିଲ୍ଲୀସହର ମଧ୍ୟ ଲୋକାରଣ୍ୟ । ଅଧିକନ୍ତୁ ଭାରତର ରାଜଧାନୀ ହୋଇଥିବାରୁ ବିଶିଷ୍ଟ ଓ ବିଶେଷ ଲୋକସମାଗମରେ ପ୍ରାତ୍ୟହିକ ମୁଖରିତ । ଦିଲ୍ଲୀ ଗୃହନୀଟୌକ ଲୋକ ସମାଗମର କେନ୍ଦ୍ରସ୍ଥଳ ।ସାହା-ଜାନଙ୍କ କନ୍ୟା ଜାହାଜାରା ବେଗମ୍ଙ୍କ ଦ୍ୱାରା ସର୍ବପ୍ରଥମେ ଏହା ସ୍ଥାପିତ ହୋଇ ଥିଲା । ପରେ Clock Tower Municipality

ଦ୍ୱାରା ଖ୍ରୀ ୧୮୫୭ ସାଲରେ ପୁଣି ବର୍ତ୍ତମାନ ଭାବେ ନିର୍ମିତ ହେଲା । ନିର୍ମାଣ ହେବାପାଇଁ ୫,୮୦,୦୦୦ ମୁଦ୍ରା ବ୍ୟୟିତ ହୋଇଥିବା କଥିତ ହୁଏ ।

ପୁରୁଣା ଦିଲ୍ଲୀରେ ଭାରତର ପ୍ରସିଦ୍ଧ ଶିଳ୍ପୀମାନେ ବାସକରନ୍ତି । ଦିଲ୍ଲୀର ହାତୀଦାନ୍ତ ଓ ଜରୀକାମମାନ ସୁପ୍ରସିଦ୍ଧ । ଏହିଠାରେ ଭଲ ଅତର, ମୁରବା ଓ ଅଙ୍ଗୁର ବହୁଳ ଭାବରେ ମିଳେ । ସୁନା ରୁପା ଓ ଅନ୍ୟ ଧାତୁର କାରିଗରମାନେ ପ୍ରଧାନତଃ ଚାନ୍ଦନୀଚୌକରେ ବାସ କରନ୍ତି ।

—ଃ(୦)ଃ—

## ଐତିହାସିକଙ୍କ ମତରେ ଦିଲ୍ଲୀର ପରିସ୍ଥିତି

ପୌରାଣିକ ଯୁଗରେ ଦିଲ୍ଲୀ ନଗରୀ ସ୍ଥାପିତ ହୋଇଥିବା କଥା ଏଥିପୂର୍ବେ ଲେଖା ଯାଇ ଅଛି । ଐତିହାସିକମାନେ ଅନୁମାନିକ ଖ୍ରୀଃ ପୂ ୧୦୦୦ ବୋଲି ନିଷ୍ପତ୍ତି କରିଅଛନ୍ତି । ଖ୍ରୀ ୧୧୯୨ ରେ ଶେଷ ହିନ୍ଦୁ ସମ୍ରାଟ ପୃଥ୍ୱୀରାଜଙ୍କ ହସ୍ତଚ୍ୟୁତ ହୋଇ ଦିଲ୍ଲୀ କୁତୁବୁଦ୍ଦିନଙ୍କ ହସ୍ତଗତ ହେଲା । କ୍ରମେ ମୋଗଲ ପ୍ରଭୁତ୍ୱ ବିସ୍ତାର ଲାଭକରି ଖ୍ରୀ ୧୩୯୯ ରେ ତୈମୁର ଲାଙ୍ଗଙ୍କ ଦ୍ୱାରା ହସ୍ତଗତ ହେଲା । ତୈମୁର ଲାଙ୍ଗ ଲାହୋର ଶାସନକର୍ତ୍ତାଙ୍କୁ ଏହି ବିଜିତ ନଗର ଅର୍ପଣକରି ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ । ପୁଣି ଲୋଦୀ-ରାଜବଂଶଙ୍କ ଆଧିପତ୍ୟ ଲୁପ୍ତହେଲା—ଅଫଗାନ୍‌ମାନେ ପୁଣି ୧୪୫୦ରେ ଏହି ସହର ହସ୍ତଗତ କରି ୧୫୨୬ ପର୍ଯ୍ୟନ୍ତ ନିଜ କର୍ତ୍ତୃତ୍ୱରେ ରଖିଲେ ।

ତୈମୁର୍ ଲାଙ୍ଗର୍ଙ୍କ ବଂଶଧର ବାବର ୧୫୨୬ ଖ୍ରୀଷ୍ଟାବ୍ଦ ମେ ୧୦ତାରିଖରେ ଲୋଡିବଂଶର ଶେଷ ସମ୍ରାଟଙ୍କୁ ବିଖ୍ୟାତ ପାନିପଥ ଯୁଦ୍ଧରେ ନିଧନ କରି ଦିଲ୍ଲୀ ଅଧିକାର କଲେ । ସେହି ଦିନ ଠାରୁ ଦିଲ୍ଲୀ ତଥା ଭାରତ ମୋଗଲମାନଙ୍କ ଅଧୀନରେ ଶାସିତ ହେଲା । ବାବର ଦିଲ୍ଲୀ ଅଧିକାର ଚାରିବର୍ଷ ପରେ ପ୍ରାଣ ତ୍ୟାଗ କଲେ । ସୁତରାଂ ବିଜେତା ବାବର ବିଜୟ୍ ଭୋଗ ବେଶୀ ଦିନ କରି ପାରିଲେ ନାହିଁ । ବାବରଙ୍କ ପରେ ତାଙ୍କ ପୁତ୍ର ହୁମାୟୁନଙ୍କ ଠାରୁ ବାହାଦୁର ଶା II ଭାରତ ଶାସନ କରିଥିଲେ । ମୋଗଲ ଅଧୀନରେ ଖ୍ରୀ ୧୮୫୮ ପର୍ଯ୍ୟନ୍ତ ଦିଲ୍ଲୀ ତଥା ଭାରତ ଶାସନ ରହିଲା । ୧୭୦୭ ପର୍ଯ୍ୟନ୍ତ ମୋଗଲ ଅଧିକାର ଭାରତରେ ଅଖଣ୍ଡ ରହି, ମୋଗଲ ଶେଷ ସମ୍ରାଟ ଆରଂଜେବଙ୍କ ଠାରୁ କେବଳ ଶେଷ ହେଲା । ପ୍ରଥମ ମୋଗଲ ସମ୍ରାଟମାନେ ବଡ଼ ବୁଦ୍ଧିଶାଳୀ ଓ ବଳଶାଳୀ ଥିଲେ । କିନ୍ତୁ ପରବର୍ତ୍ତୀକାଳରେ ସେମାନଙ୍କ ବଂଶଧରମାନେ ବଳହୀନ ଓ ବ୍ୟସନ ପ୍ରିୟ ହୋଇ ସ୍ୱର୍ଣ୍ଣପ୍ରସୂ ଭାରତ ହରାଇଥିଲେ । ମୋଗଲ ପ୍ରଭୁତ୍ୱ ପରେ ମହରଟ୍ଟା ରାଜତ୍ୱ ଆରଂଭ ହେଲା । କିନ୍ତୁ ମହରଟ୍ଟା ରାଜତ୍ୱ ବେଶୀ ଦିନ ତିଷ୍ଠି ପାରିଲା ନାହିଁ—ପ୍ରବଳ ପରାକ୍ରାନ୍ତ ବ୍ରିଟିଶମାନେ ମହରଟ୍ଟାମାନଙ୍କଠାରୁ ଅନାୟାସରେ ଭାରତ ପ୍ରାପ୍ତ ହୋଇ ସେହି ଦିନ ଠାରୁ ରାଜତ୍ୱ ଆରଂଭ କଲେ । ବିଦ୍ରୋହ କରିବା କାରଣରୁ ଶେଷ ସମ୍ରାଟ ବାହାଦୁର ଶା' II ସୁଦୂର ରେଙ୍ଗୁନରେ ବନ୍ଦୀ ହୋଇ ରହିଲେ । ବାବରଙ୍କ ଠାରୁ ଆରଂଭ କରି ବାହାଦୁର ଶାହାଙ୍କ ପର୍ଯ୍ୟନ୍ତ ଲେଖିଲେ ଏକ ଗ୍ରନ୍ଥ ହେବ ପୁଣି ତାହା ପୁନରାବୃତ୍ତି ହେବ ମାତ୍ର, ସୁତରାଂ କ୍ଷାନ୍ତ ହେଲି ।

୧

ଉତ୍ତର ଭାରତ ଅଞ୍ଚଳର ଲୋକେ ସମସ୍ତେ ପ୍ରାୟ ଶ୍ୱେତକାୟ—ହୃଷ୍ଟକାୟ ପୁରୁଷ କା ସ୍ତ୍ରୀ କ୍ୱଚିତ ଦେଖାଯାନ୍ତି । ସ୍ତ୍ରୀମାନେ ପାଇଜାମା ଓ

କମେଜ ପିନ୍ଧନ୍ତି—ଉପରେ ଉପବସ୍ତ୍ର ଦିଅନ୍ତି । ମୁସଲମାନ୍ ସ୍ତ୍ରୀମାନେ ଭୁର୍ଖା ବ୍ୟବହାର କରନ୍ତି । ଭଲ ଶ୍ରେଣୀସ୍ଥ ସ୍ତ୍ରୀମାନେ ଲୁଙ୍ଗୀ, କମେଜ ଓ ଉପବସ୍ତ୍ର ବ୍ୟବହାର କରନ୍ତି ।

୨

ଗାଡ଼ ଟାଣିବା ପାଇଁ ଏ ଦେଶରେ ଓଟ ମଧ୍ୟ ବ୍ୟବହୃତ ହୁଏ । ଗ୍ରାଣ୍ଡଟ୍ରଙ୍କ ରୋଡ଼ ଏଥିପାଇଁ ପ୍ରଶସ୍ତ । କିନ୍ତୁ ଟାଙ୍ଗା ବା ଝଟ୍କା ଏ ଅଞ୍ଚଳର ପ୍ରଧାନ—ଯାନ । ଗୋଟିଏ ଗୋଟିଏ ଘୋଡ଼ାଦ୍ୱାରା ଟାଙ୍ଗା ବା ଝଟ୍କା ଟଣାଯାଏ । ଚାରିଜଣ ମନୁଷ୍ୟ ବସିବା ପାଇଁ ଟାଙ୍ଗାରେ ସ୍ଥାନ ଥାଏ । ପିଠିକୁ ପିଠି ଲଗାଲଗି ହୋଇ ଆଗପଛ ଚାରିଜଣ ବସନ୍ତି ।

୩

ଏଠା' ମୁସଲମାନ୍‌ମାନେ ବଳଦ ଉପରେ ବସନ୍ତି ଓ ବୋଝ —ବହନ କରିବା ସକାଶେ ସେମାନେ ବଳଦମାନଙ୍କୁ ହିଁ ବିଶେଷଭାବେ ବ୍ୟବହାର କରନ୍ତି । ମାର୍ଚ୍ଚ ୩୧ ତାରିଖରେ ଗୋଟିଏ ବିବାହ— ଶୋଭାଯାତ୍ରା ଦେଖିଥିଲି । 'ବର' ମୁକୁଟ ପିନ୍ଧି ଗୋଟିଏ ମସ୍ତ ବଳଦ ଉପରେ ବସିଥିଲା—ତା' ପଛରେ ଗୋଟିଏ ବାଳକ 'ବର'ର ଅଣ୍ଟାକୁ ଧରି ବସିଥିଲା ।—ବିବାହ ଯାତ୍ରାରେ ଏ ଅଞ୍ଚଳ ମୁସଲମାନମାନଙ୍କ ବଳଦ ବ୍ୟବହାର ଏକ ବିଶେଷତ୍ୱ ।

୪

ଦିଲ୍ଲୀର ପ୍ରତ୍ୟେକ ରୋଡ଼ର ନାମ ଇତିହାସ ଦୃଷ୍ଟିରୁ ଦିଆଯାଇ ଅଛି, ଯଥା:—ଫିରୋଜ୍ ଶା' ରୋଡ଼, ମାନସିଂହ ରୋଡ଼, ଅକବର

ରୋଡ଼, ଯନ୍ତ ମନ୍ତ ରୋଡ଼, ଅରଂଜେବ ରୋଡ଼, ଅଶୋକ ରୋଡ଼, ସିକନ୍ଦ୍ରା ରୋଡ଼ ଇତ୍ୟାଦି ।

ବ୍ରିଟିଶ ରାଜତ୍ଵର କୌଣସି ବିଶିଷ୍ଟ ଘଟଣା ନେଇ ମଧ୍ୟ କେତେକ ରାଜପଥର ନାମକରଣ ହୋଇଅଛି ଯଥା:— King's way, Queen's way, Canning Road ଇତ୍ୟାଦି ।

୫ ।

ଦିଲ୍ଲୀସହରର ପ୍ରାଚୀନ ଓ ଅଧୁନାତ ସଭ୍ୟତାର କେନ୍ଦ୍ରସ୍ଥଳ— ସୁତରାଂ ବ୍ୟବହାର ମାନ ମଧ୍ୟ ଦ୍ଵିବିଧ ପ୍ରକାର ଦେଖାଯାଏ । ଉଟ ଗାଡ଼ି ଯେଉଁପରି ଏଠାରେ ବ୍ୟବହୃତ ହେଉଅଛି, ଏରୋପ୍ଲେନ ବା ବେ ।ମଜାନ ସେହିପରି ବ୍ୟବହୃତ ହେଉଅଛି । ପ୍ରାଚୀନ ବସ୍ତୁମାନ ଯେଉଁପରି ଅତୀତ ଯୁଗ ସ୍ମରଣ କରାଇ ଦିଏ, ନୂତନ ଦିଲ୍ଲୀ, ନୂତନ ପ୍ରଣାଳୀ ପ୍ରାସାଦମାନ ସେହିପରି ଉଜ୍ଜ୍ୱଳ ଭବିଷ୍ୟତ ଦେଖାଇ ଦିଏ ।

୬

ନୂତନ ଦିଲ୍ଲୀର ଅଧିକାଂଶ ରାସ୍ତା ମାନଙ୍କରେ ଟାଙ୍ଗାଗାଡ଼ି ଯାତାୟାତ କରିବା ପାଇଁ ନିଷେଧାଜ୍ଞା ଅଛି । New Delhi ବଜାର ଠାରୁ ଦୂରରେ ଅବସ୍ଥିତ ଥିଲେ ସୁଦ୍ଧା, ପ୍ରତିଦିନ ସକାଳୁ ଦୁଧ, ମାଛ, ମାଂସ, ପରିବା ଇତ୍ୟାଦି ଜିନିଷମାନ ବିକି ହେବା ପାଇଁ ଆସେ ।

୭

ନିକଟସ୍ଥ ଗ୍ରାମମାନଙ୍କୁ ଯିବା ଆସିବା ପାଇଁ ଲୋକେ ପ୍ରଧାନତଃ ଓଟ ବ୍ୟବହାର କରିଥାନ୍ତି । ସାନ ଘୋଡ଼ାମାନଙ୍କରେ ମଧ୍ୟ ଯିବା ଆସିବା କରନ୍ତି । ଏ ଅଞ୍ଚଳର ମାଟି ବଡ ଉର୍ବର ଓ

ବର୍ଣ୍ଣି ହଂସର । ଗଙ୍ଗାନଦୀ ପ୍ରବାହିତ ହେଉଥିବାରୁ କୃଷି—ଜାତ ପଦାର୍ଥ ବିଶେଷ ଉତ୍ପନ୍ନ ହୁଏ । ଫଳ ପତ୍ରବା ଅନ୍ୟ ଦେଶଠାରୁ ଏଠାରେ ଖୁବ୍ ସସ୍ତା ।

ମୋଗଲ ସରାଇ ଷ୍ଟେସନ ଠାରୁ ଏଣିକି ବିଶେଷ ପିତ୍ତଳ—ଜାତ ଜିନିଷ ବିକ୍ରି ହୁଏ । ଗୃହ ସଜାଇବା ପାଇଁ ବଡ଼ ବଡ଼ ପିତ୍ତଳ ଓ କୋଡ଼ିର ଜିନିଷ ବହୁଳ ଭାବରେ ବିକ୍ରି ହୋଇଥାଏ । ପାଶ୍ଚାତ୍ୟ ବାସୀମାନେ ଏହି ଜିନିଷମାନ ବିଶେଷ ଭାବେ କିଣିଥାନ୍ତି, ସୁତରାଂ ବେଶୀ ଦାମ୍ ହୁଏ ।




ବ୍ରହ୍ମପୁର ବସ୍ତୁଲ ପ୍ରେସ୍‌ରେ କେ. ପି. ଦେବଙ୍କ ଦ୍ୱାରା ମୁଦ୍ରିତ ଓ
ଧରାକୋଟ ଯୁବରାଜ ସାହେବଙ୍କ ଦ୍ୱାରା ପ୍ରକାଶିତ ।